# ଗଳ୍ପ ସଂକଳନ

ପ୍ରଥମ ସଂସ୍କରଣ
୧୯୬୫

ପ୍ରକାଶକ
ଗ୍ରନ୍ଥମନ୍ଦିର

Digitized by srujanika@gmail.com

ଗଳ୍ପ ସଂକଳନ

ସଂକଳକ

ଶିବରାମ ମହାପାତ୍ର ବି. ଏ.

ପ୍ରକାଶକ

ଅଭିରାମ ମହାପାତ୍ର

ଗ୍ରନ୍ଥ ମନ୍ଦିର

କଟକ-୨ : ବ୍ରହ୍ମପୁର

ମୁଦ୍ରକ

ଅଜୟକୁମାର ଘୋଷ

ଶ୍ରୀହରିନାଥ ପ୍ରେସ

କଟକ-୨

ମୂଲ୍ୟ

ଟ ୨୦.୫୦

Digitized by srujanika@gmail.com

## ସୂଚୀପତ୍ର



Digitized by srujanika@gmail.com

# ଅବତାର

## ଲେଖକ—କୁଲୱନ୍ତ ସିଂହ ବାର୍କ

## ଅନୁବାଦକ—ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର

[ ଆଧୁନିକ ପଞ୍ଜାବୀ ସାହିତ୍ୟରେ ଶ୍ରୀଯୁକ୍ତ କୁଲୱନ୍ତ ସିଂହ ବାର୍କ ଜଣେ ପ୍ରସିଦ୍ଧ ଗଳ୍ପଲେଖକ । ଏହି ପ୍ରଖ୍ୟାତନାମା ଲେଖକଙ୍କର ବହୁ ଗଳ୍ପ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ଏବଂ ବିଭିନ୍ନ ଭାରତୀୟ ଭାଷାରେ ଅନୂଦିତ ହୋଇଅଛି । ପଞ୍ଜାବର ଫୁଲୱାରେନ୍‌ଠାରେ ୧୯୨୧ ମସିହାରେ ଲେଖକଙ୍କର ଜନ୍ମ । ପଞ୍ଜାବ ବିଶ୍ୱବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇ ଲେଖକ ସାହିତ୍ୟ ସାଧନାରେ ବ୍ରତୀ ହେଲେ । "ଧରତୀ ଓ ଆକାଶ" ଲେଖକଙ୍କର ଏକ ପ୍ରସିଦ୍ଧ ଗଳ୍ପସଂକଳନ । ]

ଅମୃତସରଠାରୁ ତଥିଗଡ଼ ସେତେ ବେଶି ଦୂର ବାଟ ନୁହେଁ । ତାହା ଗୋଟିଏ ପକ୍କା ରାସ୍ତାର ପାର୍ଶ୍ୱରେ ଅତି ସୁବିଧାଜନକ ଭାବରେ ଅବସ୍ଥିତ । ସେ ଯାହା ହେଉ ମାନସିଂ ମନରେ ଉତ୍ସାହ ଏବଂ ବିଶେଷ ସ୍ଫୂର୍ତ୍ତି । ଏମିତ ଅବସ୍ଥାରେ ରାସ୍ତା ଯେତେ ଦୂର ହେଲେ ମଧ୍ୟ ଆଦୌ ଜଣା ପଡ଼େନାହିଁ । ଅବଶ୍ୟ ସନ୍ଧ୍ୟାର ଛାୟା କ୍ରମଶଃ ଚତୁର୍ଦ୍ଦଗରେ ଖେଳି ଯାଉଥିଲା ଏବଂ ଟାଙ୍ଗା ଟାଣୁଥିବା ଛଟୁଘୋଡ଼ା ଗୁଡ଼ାକ ରାସ୍ତାରେ କ୍ଳାନ୍ତ ଭାବରେ ପାଦ ପକାଉଥିଲେ । ତଥାପି ମାନସିଂ ମନରେ ଆଦୌ ଚିନ୍ତା ନ ଥିଲା । ମାନସିଂ ସୈନ୍ୟ ବିଭାଗରେ ଚାକିରି କରେ । ବର୍ତ୍ତମାନ ସେ ଛୁଟିରେ ଅଛି । ସେ ତାର ବନ୍ଧୁ କରମସିଂର ଗାଆଁକୁ ଯାଉଥିଲା ।

Digitized by srujanika@gmail.com

ସୈନ୍ୟ ବିଭାଗରେ ସହକର୍ମୀମାନଙ୍କ ମଧ୍ୟରେ ବନ୍ଧୁତା ସବୁଠାରୁ ଦୃଢ଼ ହୋଇଥାଏ ଏବଂ ଏପରି ପ୍ରଗାଢ଼ ବନ୍ଧୁତା ଅନ୍ୟ କେଉଁଠାରେ ଦେଖାଯାଏ ନାହିଁ । ମାନସିଂ ଏବଂ କରମ୍‌ସିଂ ଏକନ୍ଦ ଏକ ସୈନ୍ୟ-ବିଭାଗରେ ଚାକିରି କରୁଥିଲେ । ବର୍ତ୍ତମାନ ମଧ୍ୟ ବର୍ମା ସୀମାରେ ଏକତ୍ର ଅବସ୍ଥାପିତ ହୋଇଛନ୍ତି । କରମ୍‌ସିଂଙ୍କର ଚାକିରି ବେଶୀଦିନ ହୋଇଥିବାରୁ ସେ ବର୍ତ୍ତମାନ ହାବିଲଦାର ପାହ୍ୟାକୁ ଯାଇ ପାରିଛନ୍ତି । କିନ୍ତୁ ମାନସିଂ ବର୍ତ୍ତମାନ ଜଣେ ନାୟକ ମାତ୍ର ।

ଗାଆଁ ଲୋକେ ବରାବର କରମସିଂର ବାପାକୁ, ପୁଅକୁ କେବେ ଛୁଟି ମିଳିବ ବୋଲି ପଚାରୁଥିଲେ । କରମସିଂ ବନ୍ଧୁ ହିସାବରେ ଜଣେ ବଡ଼ ମିଳାପୀ ସଦାଶୟ ବ୍ୟକ୍ତି ଥିଲେ । ତାଙ୍କର କଥାବାର୍ତ୍ତା ବେଶ୍ ଖୁସି ଲାଗୁଥିଲା । ତେଣୁ ତାଙ୍କଠାରୁ ଯୁଦ୍ଧ ଏବଂ ଯୁଦ୍ଧଭୂଇଁର ଗଳ୍ପ ଶୁଣିବାପାଇଁ ଲୋକମାନେ ବରାବର ଇଚ୍ଛା କରୁଥିଲେ । କରମ୍‌ସିଂ ଛଡ଼ା ତାଙ୍କ ଗାଆଁର ଅନ୍ୟ କେତେକ ଯୁବକ ମଧ୍ୟ ଯୁଦ୍ଧବିଭାଗରେ ଚାକିରି କରୁଥିଲେ । କିନ୍ତୁ ସେମାନେ ଯେତେବେଳେ ଛୁଟିରେ ଗାଆଁକୁ ଆସନ୍ତି, ସେମାନେ ଗାଆଁବାଲାଙ୍କ ସହିତ କଣ କଥାବାର୍ତ୍ତା କରିବେ, କି ଚର୍ଚ୍ଚା କରିବେ; ତାହା ସେମାନଙ୍କୁ ଜଣା ନ ଥିଲା । ସେମାନଙ୍କ ମଧ୍ୟରୁ ହୁଏତ ଅନେକ ଗାଆଁବାଲାଙ୍କୁ ଦେଖିଲେ କେବଳ ଦଣ୍ଡବତ୍‌ଟାଏ କରିବା ଛଡ଼ା ଅନ୍ୟ କିଛି କଥାବାର୍ତ୍ତା କରୁ ନଥିଲେ । ମାତ୍ର କରମ୍‌ସିଂର କଥା ସ୍ୱତନ୍ତ୍ର । ସେ ଯେତେବେଳେ ଗାଆଁକୁ ଆସେ, ସେତେବେଳେ ଲୋକମାନେ ସକାଳବେଳା କୂଅ ନିକଟରେ ମେଳାବାନ୍ଧି ତା ସହିତ ଗପସପ କରନ୍ତି । ଏପରି ମଧ୍ୟ କେହି କେହି ଗପସପ କରୁକରୁ ଗାଧୋଇବା ଭୁଲିଯାଆନ୍ତି । ଶୀତଦିନ ରାତିରେ ମଧ୍ୟ ଗାଆଁ ଲୋକମାନେ ଅଧରାତି

Digitized by srujanika@gmail.com

ପର୍ଯ୍ୟନ୍ତ ଗ୍ରାମ ଦାଣ୍ଡରେ ନିଅଁ ପୋଉଁଥାନ୍ତି ଏବଂ ଭରମ୍ ସିଂ-ଠାରୁ ଯେ ଗପ ଶୁଣୁଥାନ୍ତି ତାର କଳନା ନାହିଁ । ଏହାପରେ ଭରମ୍ ସିଂର ଉପସ୍ଥିତି ଯୋଗୁଁ ଆଲୋଚନାଟା ବେଶ୍ ସରଗରମ ହୁଏ ।

ସୈନ୍ୟବାହିନୀରେ ତାଙ୍କ ନିଜ ଦଳରେ ବନ୍ଧୁକ ମାରିବା ପ୍ରତି-ଯୋଗିତାରେ ଭରମ୍ ସିଂ ଏପରି ଦକ୍ଷହସ୍ତ ଥିଲେ ଯେ ସେ ଯେଉଁଠିକି ଲକ୍ଷ୍ୟକରି ଗୁଳି ମାରୁଥିଲେ ତାହା ଅବ୍ୟର୍ଥ ଭାବରେ ବାଜି ହେଉ-ଥିଲା । ତାର ଲକ୍ଷ୍ୟଭେଦ ଦେଖିଲେ ମନେହୁଏ ସତେ ଅବା କେହି ଛୁଞ୍ଚିରେ ବାନ୍ଧି କରିଦେଇଛି । ଯୁଦ୍ଧ ସମୟରେ ବହୁ ଜାପାନୀ ସୈନ୍ୟ ବୃକ୍ଷ ଅନ୍ତରାଳରେ ଲୁଚି ରହୁଥାନ୍ତି । କିନ୍ତୁ ଭରମ୍ ସିଂର ଗୁଳି ସେମାନଙ୍କୁ ଧ୍ୱସ୍ତବିଧ୍ୱସ୍ତ କରିଦିଏ । ଏହାପରି ଭରମସିଂ ନିଜ ବନ୍ଧୁମାନଙ୍କର ହତ୍ୟାନିମିତ୍ତ ବହୁ ଜାପାନୀ ସୈନ୍ୟଙ୍କ ଉପରେ ପ୍ରତିଶୋଧ ନେଇଥିବ । ଫଳରେ କେତେ ଅଶାନ୍ତ ହୃଦୟ ଶାନ୍ତ ହୋଇଥିବ । ଯେଉଁଠି ମେସିନ୍‌ଗନ୍ ହାରି ମାନିଯାଏ ଏବଂ ଲକ୍ଷ୍ୟହାସଲ କରି ନ ପାରେ, ସେଠି ଭରମ୍ ସିଂର ଗୋଟାଏ ଗୁଳି ମଧ୍ୟ ଯଥେଷ୍ଟ । ଯଦ୍ୟପି ତାହାର ଅଙ୍ଗ ପ୍ରତ୍ୟଙ୍ଗରୁ ବର୍ତ୍ତମାନ ଯୌବନର ଦୃଢ଼ଶକ୍ତି କମି • ଆସିଲାଣି, ତଥାପି ତାହାର ବଉଳ ପ୍ରକାର କୁସ୍ତି କସରତ୍ ଦେଖିଲେ ଲୋକେ ଆଶ୍ଚର୍ଯ୍ୟ ହୋଇଯାଆନ୍ତି ।

ଯୁଦ୍ଧ ସମୟରେ କୁସ୍ତି କସରତ୍, କ୍ରୀଡ଼ା ଏବଂ ବ୍ୟାୟାମ ପ୍ରଭୃତି ଶୁଣିଲୁ ହୁଏନାହିଁ । ସୈନ୍ୟମାନଙ୍କୁ କଠିନ ପରେଡ୍ କରିବାକୁ ପଡ଼ି ନଥାଏ । ନିକଟରେ ହାଟ ବଜାର ମଧ୍ୟ ନଥାଏ, ଯେଉଁଠାରେ କି ଜଣେ ଯାଇ ଟିକିଏ ବୁଲିଆସିବ । କେହି କାହା ପାଖକୁ ଯିବା-ଆସିବା କରୁନଥିଲେ । ତେଣୁ ବର୍ତ୍ତମାନ ଯେତେବେଳେ ମାନସିଂର ଛୁଟିରେ ଗାଆଁକୁ ଯିବାକୁ ପାଳି ପଡ଼ିଲା, ସେତେବେଳେ ଭରମ୍ ସିଂ

Digitized by srujanika@gmail.com

ମନରେ କେମିତ ଗୋଟାଏ ଈର୍ଷା ଜାତ ହୋଇଥିଲା । ସେ ମଧ୍ୟ ଇଚ୍ଛା କଲା ତାକୁ ଛୁଟି ମିଳିଥାନ୍ତା କି ତାହାହେଲେ ସେମାନେ ସେସଙ୍ଗରେ ଗାଁକୁ ଯାଇପାରନ୍ତେ ଏବଂ ଛୁଟିଟା ଅଗ୍ରମରେ ଅତିବାହିତ ହୁଅନ୍ତା । ଦୂରତ୍ୱ ମଧ୍ୟ ଅମୃତସରଠାରୁ ବେଶୀ ଦୂର ନୁହେଁ । ଏ ଦୁଇଟି ମଧ୍ୟରେ ବ୍ୟବଧାନ ହେଉଛି ମୋଟେ ପଚିଶ ମାଇଲ । ଅବଶ୍ୟ ଗୋଟିଏ ଅଞ୍ଚଳର ନାମ 'ମାଝା' ଏବଂ ଅନ୍ୟ ଅଞ୍ଚଳଟିର ନାମ 'ଦୁଆବ' । ଗୋଟିଏ ଅତ୍ୟନ୍ତ ପ୍ରାଚୀନ—ଅନ୍ୟଟି ଆଧୁନିକ । ଗୋଟିକର ପ୍ରାଚୀନ ଐତିହ୍ୟ ଯଥେଷ୍ଟ ବେଶୀ, ଅନ୍ୟଟିର ଆଧୁନିକ ପରିବେଶ ବେଶ୍ ପରିଦୃଷ୍ଟ ହୁଏ ।

କିନ୍ତୁ ଯୁଦ୍ଧ ସମୟରେ ଛୁଟିପାଇବା ବଡ଼ ମୁସ୍କିଲ । କେବଳ ଜଣେ ସେତିକି ଭାଗ୍ୟବାନ ହୋଇଥିଲେ ଛୁଟି ମିଳିଯାଏ— ଠିକ୍ ଯେପରି ଯୁଦ୍ଧ ଭୂଇଁରେ ସାହସ ଏବଂ ବୀରତ୍ୱ ପ୍ରଦର୍ଶନ କରିବା ସୁଯୋଗ କେବଳ ଭାଗ୍ୟବାନଙ୍କ ପକ୍ଷରେ ଜୁଟିଥାଏ । ମାନସିଂ ଯେତେବେଳେ ମିଲ୍‌ଟାରୀ ଟ୍ରକ୍‌ରେ ବସିଲା ସେତେବେଳେ କରମ୍‌ସିଂ ତାକୁ ବିଦାୟ ଦେବାପାଇଁ ଆସିଥିଲା । ସେ ସେତେବେଳେ ତାକୁ କହିଲା, "ଭାଇ, ତୁ ଫେରିବା ପୂର୍ବରୁ ଆମ ଗାଁକୁ ନିଶ୍ଚୟ ଯିବୁ ଏବଂ ମୋର ଘରଲୋକଙ୍କୁ ଦେଖି ଆସିବୁ । ତୋତେ ଦେଖିଲେ ସେମାନେ ଭାରି ଖୁସି ହୋଇଯିବେ । ତୁ ମୋ କଥା ତାଙ୍କୁ ସବୁ କହିବୁ । ସେମାନେ ତୋତେ ଦେଖି ମୋତେ ଦେଖିଲାଭଳି ଅନୁଭବ କରିବେ ଏବଂ ତାପରେ ମୁଁ ଯେତେବେଳେ ତୋଠାରୁ ତାଙ୍କ ଖବର ସବୁ ଶୁଣିବି ସେମାନଙ୍କୁ ସବୁ ଦେଖିଲାପରି ମନେ କରିବି ।"

Digitized by srujanika@gmail.com

ମାନସିଂର ଅଗ୍ରହ ବଢ଼ାଇବା ପାଇଁ କରମ୍‌ସିଂ କହିଲା, “ଆମ ଗାଆଁର ଶେଷମୁଣ୍ଡରେ ବହୁତ ଦୃଶ୍ୟ ଅଛି । ତୁ ସେ ସବୁ ଦେଖିଛୁ ?” ମାନସିଂ କହିଲା, “ମୁଁ ଦେଖିନାହିଁ । ମୁଁ ଅମୃତସର ବାଟେ ଯାଇଛି । କିନ୍ତୁ ସେଠାରୁ ଆଉ ଦୂରକୁ ଯାଇନାହିଁ ।” “ଓଃହୋ ! ସେଠାରେ ବହୁତ କିଛି ଜିନିଷ ଦେଖିବାର ଅଛି । ତୁ ଏଥର ସେସବୁ ଦେଖିବୁ, ମୋ ଲୋକମାନଙ୍କ ସହିତ ଆଳାପ ହେବ । ମୁଁ ସେମାନଙ୍କୁ ଚିଠି ଲେଖୁଛି ।” ଏହା କହିସାରି କରମ୍‌ସିଂ ନିଜର ପ୍ରୀତି ଦେଖାଇ ସେଠାରୁ ଚାଲିଗଲା ।

ସେଥିଯୋଗୁଁ ମାନସିଂ ବର୍ତ୍ତମାନ ଛୁଟି ଶେଷ ବେଳକୁ କରମ୍‌ସିଂର ଗାଆଁକୁ ଗୋଟାଏ ଟାଙ୍ଗାରେ ଯାଉଥିଲା ।

× × ×

“ନମସ୍କାର ବାବୁଜୀ । ମୁଁ ଚୁହାରକଣାରୁ ଆସିଛି । ମୋ ନାମ ମାନସିଂ ।” ମାନସିଂ କରମ୍‌ସିଂର ଘର ବାରଣ୍ଡାରେ ବସିଥିବା ବୃଦ୍ଧଲୋକଙ୍କୁ ହାତଟେକି ଭକ୍ତିର ନମସ୍କାର କଲା । “ବେଶ୍ ବେଶ୍ ଭଲ କଥା, ଆସ, ବସ ।” ବୃଦ୍ଧ ଏହି କେତେ ପଦ କଥା କହିଲେ । ମାନସିଂ ଘରଭିତରକୁ ଯାଇ ଗୋଟିଏ ଖଟ ଉପରେ ବସିପଡ଼ିଲା । ମାନସିଂକୁ ଦେଖି ବୃଦ୍ଧ ଟିକିଏ ବ୍ୟସ୍ତହେଲାପରି ଜଣାଗଲା । ସେ ଥରେ ମାନସିଂକୁ ଚାହିଁ ଛାପରେ ଧୀର ନିଶ୍ୱାସ ଛାଡ଼ି ଗମ୍ଭୀର ଭାବରେ ତଳକୁ ଚାହିଁଲେ । ମାନସିଂ ଅବଶ୍ୟ ଧୈର୍ଯ୍ୟ ହରାଇବା ଲୋକ ନୁହେଁ, କିନ୍ତୁ ସେ ଗୋଟାଏ ଜାତର ଅସ୍ୱସ୍ତି ଅନୁଭବ କଲା । ସେ ମନେ ମନେ ଭାବନେଲା ଯେ ବୃଦ୍ଧଲୋକଟି କରମସିଂର ବାପା ନୁହେଁ ।

Digitized by srujanika@gmail.com

ଏହାପରେ ମାନସିଂ ଟିକିଏ ଗମ୍ଭୀର ସ୍ୱରରେ ପଚାରିଲେ,—"ଆପଣ କଣ କରମ୍‌ସିଂର ବାପା ?"

"ହଁ, ଏଇଟା ଆମ ଘର ।"

"ସେ କଣ ଆପଣଙ୍କୁ ମୋ କଥା ଲେଖିଥିଲା ?"

"ହଁ, ଲେଖିଥିଲା । ତା ପରେ ସେ ଲେଖିଥିଲା ତୁମେ ଆସି ଆମକୁ ଦେଖିଯିବ ।"

ଏହା କହି କହି ବୃଦ୍ଧ ଠିଆହେଲେ ଏବଂ ଘର ଅଗଣା ଭିତରେ ପ୍ରବେଶ କଲେ । ସେ ଗୋଟିଏ ମଇଁଷିକୁ ଗୁହାଳରୁ ଫିଟାଇ ଅନ୍ୟ ଖୁଣ୍ଟିରେ ବାନ୍ଧିଦେଲେ । ସେ ସେହି ମଇଁଷିକୁ ଟିକିଏ ଅଉଁସିଲେ ଏବଂ ତାଙ୍କ ହାତ ଚଟାଇଲେ । ଏହାପରେ ଘରଭିତରକୁ ଯାଇ ମାନସିଂ ଆସିବା କଥା ବଡ଼ପାଟିରେ ଘୋଷଣା କଲେ ଏବଂ ଗୁଡ଼ ବସାଦ କଲେ । ସେ ଯେପରି ବାରଣ୍ଡାକୁ ଆସିବାପାଇଁ ଭୟ କରୁଥିଲେ—ତେଣୁ ଅଗଣା ମଝିରେ ଟିକିଏ ଅପେକ୍ଷା କଲେ । ଏହାପରେ ଘୋଡ଼ା ଆଗରେ କିଛି ଘାସ ପକାଇ ଦେଇ ବାରଣ୍ଡାକୁ ଫେରି ଆସିଲେ । କିନ୍ତୁ ପୂର୍ବପରି ତାଙ୍କ ମୁଖମଣ୍ଡଳରେ ବାତ୍ସଲ୍ୟ ପ୍ରକାଶ ପାଉଥିଲା ।

ମାନସିଂ ଜାଣେ ଯେ କରମସିଂର ଗୋଟିଏ ସାନ ଭାଇ ଅଛି—ତା ନାମ ହେଉଛି ଯଶୋବନ୍ତସିଂ । ନୀରବତା ଭଙ୍ଗକରି ମାନସିଂ ପଚାରିଲା, "ଯଶୋବନ୍ତ କାହିଁ ?"

"ଦାନା ଆଣିବାକୁ ଯାଇଛି । ସେ ଏଇକ୍ଷଣି ଆସିଯିବ ।" ଇତ୍ୟବସରେ କରମସିଂର ମା ଗୁଡ଼ ଆଣିଦେଲେ ।

Digitized by srujanika@gmail.com

ମାନସିଂ ଏହି ସମୟରେ ମାଆଙ୍କୁ ଲକ୍ଷ୍ୟକରି କହିଲେ, "ସତ୍ରଶ୍ରୀ ଅକାଲ୍ ବେଲ୍ଲ" । ମାନଙ୍କ କଥାରେ ଭକ୍ତି ଓ ଶ୍ରଦ୍ଧା ଭାବ ପରିସ୍ଫୁଟ ହୋଇଥିଲା । ମାଙ୍କ ବୃଦ୍ଧାଙ୍କର ସମଗ୍ର ଓଷ୍ଠ କମ୍ପିତ ହୋଇଉଠିଲା—ସତେ ଅବା ସେ ଯେପରି କଣ କହିବାକୁ ଚାହୁଁଛନ୍ତି, ମାବ ପ୍ରକାଶ କରିପାରୁ ନାହାନ୍ତି । ମାନଙ୍କ ବୃଦ୍ଧାଙ୍କ ହାତରୁ ଚା ନେଲା । ବୃଦ୍ଧା ଘର ଭିତରକୁ ଚାଲିଗଲେ ।

ମାନସିଂ ମନେ ମନେ କହିଲା—ଏ ମଙ୍ଗୋଲମାନେ ବଡ଼ ଅଦ୍ଭୁତ ଲୋକ । ଯାହାହେଉ, ସେ ଆଉ ବୁଲିଚାଲି କରି ପାରିଲା ନାହିଁ । ତାର ପାଦ ଘୁଞ୍ଚିଲା ନାହିଁ । ସେ ଭାବିଲା—ଯାହାହେଉ ଆଜି ରାତିକ ଏଠି ରହିବ ଏବଂ କାଲି ବଡ଼ିସକାଳେ ଚାଲିଯିବ । ଆଜି ଏଠି ରହିବାକୁ ମୁଁ ବାଧ୍ୟ ।

ରାତିରେ ଯେତେବେଳେ ଯଶୋବନ୍ତସିଂ ଘରକୁ ଫେରିଲା, ସେତେବେଳେ ସେମାନଙ୍କ ମଧ୍ୟରେ ମାମୁଲି ଧରଣର କିଛିଏ କଥାବାର୍ତ୍ତା ହେଲା ।

ମାନସିଂ କହିବାକୁ ଲାଗିଲା, "ବର୍ମାଯୁଦ୍ଧବେଳେ କରମ୍‌ସିଂର ଗୁଳି ଖୁବ୍ ନିର୍ଭୁଲ; ଏକାବେଳକେ ଅବ୍ୟର୍ଥ । ସେ ଯେତେବେଳେ ବନ୍ଧୁକରେ ଘୋଡ଼ା ଟାଣିବ, ସେତେବେଳେ ଜଣେ ନା ଜଣେ ଜାପାନୀ ସୈନ୍ୟ ମରିବା ସୁନିଶ୍ଚିତ । କରମସିଂ କିପରି ବଣ ଜଙ୍ଗଲରେ ବୁଲି ଜାପାନୀମାନଙ୍କୁ ଖୋଜି ବାହାର କରେ, ତାହା କେହି ଜାଣିବା ମୁସ୍କିଲ ।" ଏହା କହିସାରି ମାନସିଂ କିଛିଏ ନୀରବ ହେଲା । ସେ ଆଶା କରିଥିଲା ପରିବାରର ଲୋକେ ତାକୁ ଜାପାନୀ ସୈନ୍ୟ ଏବଂ ଯୁଦ୍ଧ ସମ୍ପର୍କରେ ବହୁତ ପଚାରିବେ; କରମସିଂ ସମ୍ପର୍କରେ ଜାଣିବାକୁ ସମସ୍ତେ ଆଗ୍ରହୀ ହୋଇ

Digitized by srujanika@gmail.com

ଉଠିବେ । କାରଣ ସେ ବହୁତ ଗୁଡ଼ାଏ ଖବର ରଖିଥିଲା ଏବଂ ସେ ସବୁ ଖବର ପ୍ରକାଶ କରିବାଦ୍ୱାରା ହୃଦୟବ୍ରତ ଟିକିଏ କମିଯିବ । କିନ୍ତୁ ବଡ଼ ବିଚିତ୍ର ବ୍ୟାପାର—କେହି ତା କଥା ଶୁଣିଲେ ନାହିଁ—ସତେ ଯେପରି ତାଠାରୁ ଶୁଣିବାପାଇଁ କାହାରି ହେଲେ ଖାତିର ନଥିଲା ବା ଟିକିଏ ହେଲେ ଅଗ୍ରହ ନଥିଲା । ଏହି ସମୟରେ କାତ୍ରବ୍ଧତା ଭଙ୍ଗକରି ବୃଦ୍ଧପିତା ପଚାରିଲେ, "ଯଶୋବନ୍ତ, ପୁଣି କେବେ କେନାଲରେ ପାଣି ଛାଡ଼ ହେଉଛି ?" ଯଶୋବନ୍ତ ଉତ୍ତର ଦେଲା, "ଚଅବଧନ ପାହନ୍ତା ଉନଅଠାରେ କେନାଲରେ ପାଣି ଅସିବ ।"

ପାହାନ୍ତା ସମସ୍ତ କଥା ଶୁଣି ମାନସିଂର ମନରେ ଗୋଟାଏ କୌତୁହଳ ସୃଷ୍ଟିହେଲା । ସେ ତ କଥାର ଖିଅ ଖୋଜି ବୁଲୁଥିଲା; କାରଣ ସେ ମନେ ମନେ ଉପାୟ ପାଞ୍ଚୁଥିଲା କିପରି ଅଳାପ ବଢ଼ି ଚାଲିବ । ତେଣୁ ଠିକ୍ ଏତିକିବେଳେ ମାନସିଂ କଥାଛଳରେ ପ୍ରକାଶ କଲା, "କରମସିଂ ଅନ୍ତତଃ ଲଢ଼େଇରେ ରହି ଏହି ପାହାନ୍ତାରେ ଶେଯରୁ ଉଠିବା ଦୁଃଖରୁ ମୁକ୍ତିପାଇଛି । ପାହାନ୍ତାରେ ଶୋଇ ରହିବାକୁ ସେ ଭଲପାଏ ଏବଂ ଅମେ ସମସ୍ତେ 'ଶେଯରୁ ଉଠିବା' ପରେ ସେ ଖୁବ୍ ବିଳମ୍ବରେ ଶେଯରୁ ଉଠେ ।"

ମାନସିଂ ତାର ବନ୍ଧୁ କରମସିଂ ସମ୍ପର୍କରେ ଏତେ ଗୁଡ଼ାଏ କଥା ଅବିଶ୍ରାନ୍ତ ଭାବରେ ଏବଂ ଅଗ୍ରହରେ ଟପିଯାଇଥିଲା । ତଥାପି ମାନସିଂର ଶେଷ କେତେ ପଦ କଥା ପରିବାରର କୌଣସି ଲୋକ ମନରେ ଅଗ୍ରହ କିମ୍ବା ସ୍ପନ୍ଦନ ସୃଷ୍ଟି କଲାନାହିଁ । ପରିବାରଟିର ଶ୍ରୋତାମାନେ ସବୁ ଶୁଣି ଶୁଣି ନୀରବ, ସ୍ପନ୍ଦନହୀନ ଏବଂ ଉଦାସୀନପରି ଜଣାପଡ଼ୁଥିଲେ ।

Digitized by srujanika@gmail.com

ଏହାପରେ ରାଜ ଭୋଜନର ବ୍ୟବସ୍ଥା ହେଲା । ମାନସିଂ ପାଇଁ ସ୍ୱତନ୍ତ୍ର ଉଦଭାଗ୍ରାଏନ ରଖାଯାଇଥିଲା । ସେ ଖାଉଥିବାବେଳେ ପାଖରେ ଯଶୋବନ୍ତ ବସି ପଙ୍ଖା କରୁଥିଲେ । ଯାହାହେଉ ମାନସିଂର ମନରେ ଗୋଟାଏ ଧାରଣା ଦୃଢ଼ବଦ୍ଧ ହେଲା ଏବଂ ସେ ମଧ୍ୟ ସ୍ପଷ୍ଟ ଅନୁଭବ କରିପାରିଲେ ଯେ ତା ପ୍ରତି କେହି ବିଶେଷ ଦୃଷ୍ଟି ଦେଉ ନାହାନ୍ତି ।

ସେ ଖାଉଥିବା ବେଳକୁ ଭରମସିଂର ଛୋଟିଆ ପୁଅଟି ଧୀରେ ଧୀରେ ଯାଇ ତା ପାଖରେ ବସିଲା । ମାନସିଂ ମନେକଲେ ଅନ୍ୟ କାହା ସହିତ ଭରମସିଂ ସମ୍ପର୍କରେ କଥାବାର୍ତ୍ତା କରି ପାରିନଥିଲେ ମଧ୍ୟ ବର୍ତ୍ତମାନ ତାକୁ ଏକ ସୁଯୋଗ ମିଳିଲା । ଅନ୍ତତଃ ସେ ଶିଶୁଟି ସହିତ ଟିକିଏ ମନଖୋଲି କଥାବାର୍ତ୍ତା କରି ପାରିବ । ଶିଶୁଟିକୁ କୋଳରେ ଧରି ମାନସିଂ ଗେଲରେ ପଚାରିଲେ, "ତୁମେ ତୁମ ବାପା ପାଖକୁ ଯିବ ? ଯଦି ଯିବ ତେବେ ମୋ ସାଙ୍ଗରେ ଆସ । ମୁଁ ତୁମକୁ ତୁମ ବାପା ପାଖକୁ ନେଇଯିବି । ସେଠି ବହୁତ ବର୍ଷା ହୁଏ । ଆଉ ତୁମକୁ ଖେଳିବାକୁ ସେଠାରେ ବହୁତ ପାଣି ମିଳିବ ।" ମାନସିଂର ଏଇ କେତେ ପଦ କଥା ବୃଦ୍ଧ ପିତାଙ୍କର କର୍ଣ୍ଣରେ ଶବ୍ଦ ହୋଇଥିବା ପରି ଜଣା ପଡ଼ିଲା । ବୃଦ୍ଧ ଗର୍ଜନକରି କହିଲେ, "ପିଲାଟାକୁ ଏଠୁ ନେଇଯାଅ । ତାକୁ ଅନ୍ୟ କୁଆଡ଼େ ରଖ । ସେ ତାଙ୍କ ଦାନ୍ତ ଶାନ୍ତିରେ ଖାଇବା ଦେବନି ।" ମା ଆସି ତତ୍‌କ୍ଷଣାତ୍ ଶିଶୁ ପୁଅକୁ ଭିତରକୁ ଉଠେଇନେଲା ।

ମାନସିଂର ଗଳା ରୁଦ୍ଧ ହେଲାଭଳି ଜଣାପଡ଼ିଲା । ତା ତଣ୍ଟିରେ ଖାଦ୍ୟ ଅଟକି ରହିଗଲା । ସେ କିପରି ନିଶ୍ୱାସ ରୁଦ୍ଧ ହେଲାଭଳି ଅନୁଭବ କଲା ଏବଂ ସେ ଘରେ ଶାନ୍ତିରେ ନିଶ୍ୱାସ ନେଇ

Digitized by srujanika@gmail.com

ପାରିଲ ନାହିଁ । ଏହାପରେ ସେ ତାର ଉପରବର୍ତ୍ତୀ ଦଳ ସକାଳେ ଫେରିଯିବା ସମ୍ପର୍କରେ ପ୍ରଶ୍ନ ପଚାରିଲା, "ଏଠାରୁ ଉରନ୍ତରନ୍ କେତେ ଦୂର ହେବ ?"

ଉତ୍ତର ଆସିଲା, "ପ୍ରାୟ ଚାରି ମାଇଲ୍ ।"

"ବଡ଼ସକାଳେ କଣ ସେଠାରୁ ଟାଙ୍ଗା ମିଳେ ?"

"ସେଥିପାଇଁ ତୁମେ ବ୍ୟସ୍ତ ହୁଅନା । ତୁମ ସାଙ୍ଗରେ ଯଶୋବନ୍ତ ଯିବ । ତୁମେ ଦୁଇ ଜଣ ଆଜି ଏଠାରେ ନାନାସ୍ଥାନ ବୁଲି ଦେଖି-ଅସ ।" ଏହିପ୍ରକାର କଥାବାର୍ତ୍ତା ଓ ପ୍ରଶସ୍ତ ମାନସିଂକୁ ଗଭୀର ଆନନ୍ଦ ଦେଇଥିଲା, କାରଣ ସେ ଜାଣେ ଯଶୋବନ୍ତ ଠିକ ଏ ମିଳାମିଶା ଧରଣର ଯୁବକ । ସେ ସେମିତ ଗମ୍ଭୀର ବା ଉଦାସୀନ ନୁହେଁ ।

କିନ୍ତୁ ମାନସିଂର ଆଶା ନୈରାଶ୍ୟରେ ପରିଣତ ହେଲା । କାରଣ ଯଶୋବନ୍ତର ମଧ୍ୟ ମୁହଁ ବନ୍ଦ । ସେ ଦୁଇ ଜଣ ଯେତେ-ବେଳେ ବୁଲିବାକୁ ଗଲେ, ସେତେବେଳେ ଯଶୋବନ୍ତ ବରାବର ଗମ୍ଭୀର ହୋଇ ରହିଲା । ବାଟରେ ସେ ଯେବେ କୌଣସି ବନ୍ଧୁ-ବାନ୍ଧବଙ୍କୁ ଭେଟିଲା, ତା ହେଲେ ମାମୁଲି ନମସ୍କାର କରିବା ଛଡ଼ା ଅଧିକା କିଛି କହୁନଥିଲା । ବାଟସାରା ଯଶୋବନ୍ତ ବଡ଼ ଉଦାସୀନ ଓ ମ୍ରିୟମାଣ ଜଣାପଡ଼ୁଥିଲା । କିନ୍ତୁ ମାନସିଂର ବିଚାର ସ୍ୱତନ୍ତ୍ର । ସେ ତ ଆଉ ଏ ଅଞ୍ଚଳକୁ ଆସିବ ନାହିଁ । ତେଣୁ ସେ ବାଟରେ ଅଟକି ଲୋକମାନଙ୍କ ସହିତ କଥାବାର୍ତ୍ତା କରିବା ପାଇଁ ବରାବର ଆଗ୍ରହ ପ୍ରକାଶ କରୁଥିଲା ।

ମାନସିଂ କଥାବାର୍ତ୍ତା ଆରମ୍ଭ କଲେ, "ତୁମ ଭାଇ କରମସିଂ ସୈନ୍ୟ ବିଭାଗରେ ଖୁବ୍ ସୁନାମ ଅର୍ଜନ କରିଛି । ସୈନ୍ୟ ବିଭାଗରେ

Digitized by srujanika@gmail.com

ତାର ଖୁବ୍ ପ୍ରଶଂସା । ତୁମେ ତେବେ ତାଙ୍କ ଲଢ଼େଇକୁ ଯାଉନା ? ତୁମେ ତ ତା ଭାଇ, ସୈନ୍ୟ ବିଭାଗରେ ଯୋଗ ଦେଇ ପାରନ୍ତ ।"

ଯଶୋବନ୍ତ ହଠାତ୍ ଚମକି ପଡ଼ିଥିଲା । ଯାହାହେଉ ପର ମୁହୂର୍ତ୍ତରେ ଧୈର୍ଯ୍ୟ ସଂଗ୍ରହକରି କହିଥିଲା, "ଯୁଦ୍ଧକୁ ଜଣେ ତ ଯାଇଛି, ତାହାହିଁ କଣ ଯଥେଷ୍ଟ ନୁହେଁ ?"

ଏତିକିବେଳେ ବାଟରେ ଗୋଟିଏ ଅଖୁକିଆର ପଡ଼ିଲା । ସେହିବାଟେ ଯାଉଁ ଯାଉଁ ଯଶୋବନ୍ତ ପଚାରିଲା, "ତୁମ ଅଞ୍ଚଳରେ ବର୍ତ୍ତମାନ ଅଖୁଗଛ କେତେ ବଡ଼ ହେଲଣି ?"

ମାନସିଂ ଉତ୍ତର ଦେଲା, "ଅଖୁଗଛ ଗୁଡ଼ାକ ମଣିଷେ ମଣିଷେ ବଢ଼ି ଛନ୍ତି । ବେଶ୍ ଖୁବ୍ ଭଲ ।"

କିନ୍ତୁ ମାନସିଂର ହୃଦୟ ଏକ ଅସ୍ୱସ୍ତି ଏବଂ ଅତୃପ୍ତିରେ ପୂର୍ଣ୍ଣ ହୋଇଥିଲା । ତାର ଚିନ୍ତାର ଧାରା ସ୍ୱତନ୍ତ୍ର । ସେ ଚାହୁଁ ଥିଲା କେବଳ ତାର ବନ୍ଧୁ କରମସିଂ ସମ୍ପର୍କରେ କଥାବାର୍ତ୍ତା କରିବାକୁ । କରମସିଂ ପ୍ରସଙ୍ଗ ବ୍ୟତୀତ ତା ମନରେ ଅନ୍ୟ କୌଣସି ଭାବ ନ ଥିଲା ।

ସେଦିନ ଘରକୁ ଆସି ମାନସିଂ ତା ଗାଆଁକୁ କିପରି ଶୀଘ୍ର ଫେରିଯିବ ତାହା ଚିନ୍ତାକଲା । ସେ ଭାବିଲା—ସେ ଅମୃତସର-ଠାରୁ ସେଇ ରାତିରେ ଟ୍ରେନ୍ ଧରିବ ।

ଯଦ୍ୟପି ପରିବାରର ପ୍ରତ୍ୟେକେ ତାକୁ ସୁଖୀ କରିବା ପାଇଁ ଚେଷ୍ଟା କରିଥିଲେ, ତଥାପି ତା ମନରେ ଗୋଟାଏ ଜିନିଷର ଅବଶୋଷ ଦେଖା ଦେଲା । ସେ ଯେପରି ଆଶାକରି ଏଠାକୁ ଆସିଥିଲା ତଦନୁଯାୟୀ ଆଦର ଅଭ୍ୟର୍ଥନା ପାଇନଥିଲା । ଏପରିକି

Digitized by srujanika@gmail.com

ବର୍ତ୍ତମାନ ସେ ଯେତେବେଳେ ସେମାନଙ୍କଠାରୁ ବିଦାୟ ନେବାକୁ ଯାଉଛି ଏବଂ ତା ପାଇଁ ଘରେ ଶୁ ଛଅବ ଭଗ୍ନପାଉଛି ସେ ସେତେ-ବେଳେ ଏକାକୀ ବାହାର ବାରଣ୍ଡାରେ ବସିରହି କଣ ଗୁଡ଼ାଏ ଭାବୁଥିଲା । ସେ ଗଳି ଭିତରକୁ ଲକ୍ଷ୍ୟ କରି ଦେଖିଲା ଯେ ପୋଷ୍ଟ-ମ୍ୟାନ କାନ୍ଧରେ ଖଣ୍ଡିଏ ମୁଣା ଝୁଲାଇ ଗାଆଁ ଦାଣ୍ଡରେ ଗୁଲୁଛି । ପୋଷ୍ଟମ୍ୟାନ ଗାଆଁ ଦାଣ୍ଡରେ ସିଧା ଗୁଲୁଯାଉଥିଲା, କିନ୍ତୁ ହଠାତ୍ ବୁଲିପଡ଼ି ଆସି ମାନସିଂର ପାଖରେ ବସିପଡ଼ିଲା । ମାନସିଂ ପୋଷ୍ଟମ୍ୟାନକୁ ପଚାରିଲା, "କଣ ଅସିଛି ?" ପୋଷ୍ଟମ୍ୟାନ ଟିକିଏ ବିସ୍ମୟଭାବ ପ୍ରକାଶ କରି କହିଲା, "ଅଉ କଣ ହୋଇ-ପାରେ ? କରମସିଂର ପେନସନ୍ର କାଗଜପତ୍ର ହୋଇଥିବ ।"

ହଠାତ୍ ମାନସିଂ ମନରେ ଗୋଟାଏ ଧକ୍କା ଲଗିଲା । —"କଣ କହିଲ, କରମସିଂର ପେନସନ୍ ? କରମସିଂ କଣ ମରିଯାଇଛି ?"

"ବାଃ, ତୁମେ କଣ ଏକଥା ଜାଣନା ? ଏ ଗାଆଁର ବୃକ୍ଷଲତା, ପଶୁପକ୍ଷୀ ମଧ୍ୟ ଆଜି କରମସିଂ ପାଇଁ କାନ୍ଦୁଛନ୍ତି; ଅଉ ତୁମେ ତା ଘରେ ବସି ପଚାରୁଛ ସେ କଣ ମରିଯାଇଛି ? ପନ୍ଦର ଦିନ ତଳେ ଚିଠି ଆସିଥିଲା—କରମସିଂ ଯୁଦ୍ଧରେ ନିହତ ହୋଇଛି ।" ମାନସିଂଙ୍କ ବକ୍ଷଦେଶ ବିଦୀର୍ଣ୍ଣ ହୋଇଗଲା । ତାର କଣ୍ଠ ବାଷ୍ପରୁଦ୍ଧ ହୋଇ ଆସିଲା ଏବଂ ତାର ସର୍ବାଙ୍ଗ ସତେ ଯେପରି ସେହି ମୁହୂର୍ତ୍ତରେ ପଥର ପାଲଟିଗଲା । ତାପରେ ଦୁଇ ଚକ୍ଷୁରୁ ଅଶ୍ରୁଧାର ନିର୍ଗତ ହେଲା । କରମସିଂର ଘରଭିତରେ ତାର ବୃଦ୍ଧ ପିତା ଏବଂ ତାର କ୍ଷୁଦ୍ର ଶିଶୁ ପ୍ରଭୃତି ଯେପରି ତାର ଅଶ୍ରୁ ପ୍ରବାହକୁ ଦ୍ୱିଗୁଣିତ କରି ଦେଇଥିଲେ । ବୃଦ୍ଧ ପିତା ଘରଭିତରୁ ପୋଷ୍ଟ ମ୍ୟାନକୁ ଦେଖି ସମସ୍ତ ବୃତ୍ତାନ୍ତ ଜାଣିଗଲେ । ସେ ଅନୁଭବ କଲେ ଯେ

Digitized by srujanika@gmail.com

ସେମାନେ କରମ ଙ୍କର ମୃତ୍ୟୁ ଖବର ତାର ବନ୍ଧୁ ମାନଙ୍କ ଠାରେ ଲୁଚାଇ ରଖିପାରିଲେ ନାହିଁ । ବର୍ତ୍ତମାନ ସମସ୍ତ ଶୋକ ଏବଂ ଦୁଃଖ ଆତ୍ମପ୍ରକାଶ କଲା । ଦୀର୍ଘ ଚବିଶଘଣ୍ଟା ଧରି ଯେଉଁ ଦୁଃଖ ଶୋଚନା ସେମାନଙ୍କ ବକ୍ଷରେ ଲୁକ୍କାୟିତ ହୋଇ ରହିଥିଲା ସେହି ଭାବାକ୍ରାନ୍ତ ଶୋକୋଚ୍ଛ୍ୱାସ ଆତ୍ମପ୍ରକାଶ କଲା । ଦୀର୍ଘ ସମୟ ପର୍ଯ୍ୟନ୍ତ ସେମାନେ ସମସ୍ତେ ଅବାଧ ଅବିଚ୍ଛିନ୍ନ ଅଶ୍ରୁ ପ୍ରବାହରେ ପ୍ଲାବିତ ହୋଇଗଲେ । ମାନସି କରୁଣ କଣ୍ଠରେ ସେମାନଙ୍କୁ ପଚାରିଲା, "ଆପଣମାନେ ମୋତେ ଏ କଥା ଆଗରୁ କହିଲେ ନାହିଁ କାହିଁକି ?"

ଉତ୍ତର ମିଳିଲା, "ଆମେ ଭାବିଲୁ, ବିଚରା ଛୁଟିରେ ଗାଁକୁ ଆସିଛି । ତାର ଆନନ୍ଦ ସମୟକୁ ବିଷାକ୍ତ ଏବଂ ବ୍ୟର୍ଥ କରିବା ଦରକାର କଣ ? ସେ ଯେତେବେଳେ ଛୁଟି ପରେ ରେଜିମେଣ୍ଟକୁ ଫେରିଯିବ, ସେତେବେଳେ ସେ ସମସ୍ତ କଥା ଜାଣି ପାରିବ । ମୁଁ ଭାବୁଛି କରମ ଙ୍କ ଯେମିତି ଛୁଟି ସମୟଟାକୁ ଭଲ ପାଉଥିଲା ତୁମର ମଧ୍ୟ ଛୁଟିପାଇଁ ସେମିତି ଆକର୍ଷଣ ଥିବ—ହୁଏତ ତାଠାରୁ ଅଧିକ ଥାଇପାରେ । ବର୍ଫ ଅଞ୍ଚଳର ଲୋକମାନେ ଖୁବ୍ ଅଭାବରେ ଜୀବନ ଯାପନ କରନ୍ତି । ସେମାନଙ୍କ ଜୀବନରେ ଉପଭୋଗର ମାତ୍ରା ଅଧିକ । ସେ ଯାହାହେଉ ଆମେ ଘଟଣାଟା ଲୁଚାଇ ରଖି ପାରିଲୁ ନାହିଁ—ଆମର ସେଇଟା ଭୁଲ୍ । ଆମେ ସମସ୍ତେ ସେଥିପାଇଁ ବଡ଼ ଦୁଃଖିତ ।"

ଗାଁକୁ ଫେରିବା ବାଟରେ ମାନସିର ଚକ୍ଷୁ ସେ ଗ୍ରାମ-ମାନଙ୍କ ଉପରେ ପହଁରି ଯାଇଥିଲା । ଯେଉଁ ଗ୍ରାମର ବେଷ୍ଟନୀରେ

Digitized by srujanika@gmail.com

କରମର୍ଙ୍କର ବୃଦ୍ଧ ପିତାଙ୍କର ଜନ୍ମ ଏବଂ ବଢାଣ, ସେହି ଗ୍ରାମର ଚତୁର୍ଦ୍ଦିଗରେ ବହୁ ସମାଧି ଏବଂ ସ୍ମୃତିସ୍ତମ୍ଭ ଭାରତ ଅଙ୍ଗମଶିଳାଗ୍ର-ମାନଙ୍କ ବକ୍ଷରେ ସ୍ୱଦେଶର ବୀର ସନ୍ତାନମାନଙ୍କର ବୀରତ୍ୱ ଏବଂ ବଳସୂର ମୃତ୍ୟୁ ବହ୍ନିନ ଇତିହାସ ପ୍ରଚୁର କରୁଅଛୁ । ତାହାହିଁ ବୋଧହୁଏ ବୃଦ୍ଧ ପିତାଙ୍କର ପୁତ୍ର ବିୟୋଗଜନିତ ଅସୀମ ଦୁଃଖ ଏବଂ ଯନ୍ତ୍ରଣା ସହ୍ୟ କରିବାର ଶକ୍ତି ଓ ସାମର୍ଥ୍ୟର ମୂଳ ହେତୁ । ସେ ତାଙ୍କ ପୁତ୍ରର ଜନୈକ ବନ୍ଧୁର ମନରେ ଆଘାତ ନଦେଇ ନିଜେ ଅତିରିକ୍ତ ଦୁଃଖ ଓ ଅନୁଶୋଚନା ସହ୍ୟ କରି ପାରିଥିଲେ । ତାଙ୍କର ପ୍ରାଣ ସର୍ବଦା କାନ୍ଦୁଥିଲା । କିନ୍ତୁ ଅଜ୍ଞ ଜଣେ ଯୁବକକୁ କହେଇବା ପାଇଁ ତାଙ୍କର ଆଦୌ ଇଚ୍ଛା ନଥିଲା, କି ଧୈର୍ଯ୍ୟ ନଥିଲା ।

ମାନର୍ଙ୍କ ଶୁଣିଥିଲା ଯେ ଗୋଟାଏ ବୃଷଭ ଅଛି ଯେକି ନିଜର ମସ୍ତକରେ ସମଗ୍ର ଧରଣୀର ଭାର ଧାରଣ କରିଅଛି । କରମର୍ଙ୍କର ବୃଦ୍ଧ ପିତା ଠିକ୍ ଏହିପରି କରୁଣା ଏବଂ ଅଦମ୍ୟ ସହନଶୀଳତାର ପ୍ରତିମୂର୍ତ୍ତି । ସେ ନିଜର ଅଭିଶାପ, ଦୁଃଖ, ନିର୍ଯାତନାର ପାହାଡ଼ ତଳେ ବରାବର ପୀଡ଼ିତ, ସଙ୍କୁଚିତ ଓ ଦଳିତ ହେଉଥିଲେ ମଧ୍ୟ ଅନ୍ୟ ଜଣକର ଦୁଃଖଭାର ବହନ କରିବା ପାଇଁ ସର୍ବଦା ଅକୁଣ୍ଠିତ ଓ ଅଗ୍ରସର । ସହିଷ୍ଣୁତାର କି ପ୍ରତ୍ୟକ୍ଷ ଅବତାର ।

Digitized by srujanika@gmail.com

# ଗେରିବାଲ

ଶ୍ରୀ ରାମପ୍ରସାଦ ସିଂହ

[ ଔପନ୍ୟାସିକ ଏବଂ ପ୍ରବୀଣ କ୍ଷୁଦ୍ର ଗଳ୍ପ ଲେଖକ ରୂପେ ଶ୍ରୀଯୁକ୍ତ ରାମପ୍ରସାଦ ସିଂହ ଆଧୁନିକ ଓଡ଼ିଆ ସାହିତ୍ୟରେ ସୁପରିଚିତ । ତାଙ୍କର ଉପନ୍ୟାସମାନଙ୍କରେ ଗଭୀର ଦେଶାତ୍ମବୋଧ ଏବଂ ଜାତୀୟତା ନିପୁଣ ଭାବରେ ପ୍ରତିଫଳିତ । ଅଗ୍ନିପଥେ, ଛିନ୍ନମସ୍ତା, ପ୍ରତିହିଂସା, ସମାପ୍ତି ପ୍ରଭୃତି ତାଙ୍କର ଉପନ୍ୟାସ ଅତି ଉଚ୍ଚକୋଟୀର । ସୁନିଷ୍ଠ ଚରିତ୍ର ଚିତ୍ରଣ, ମାନବିକ ଆବେଦନ ଏବଂ ସହାନୁଭୂତି ତାଙ୍କର ଲିଖିତ ଗଳ୍ପମାନଙ୍କର ବିଶେଷତ୍ୱ । ସଂଶ୍ଳିଷ୍ଟ ଗଳ୍ପ 'ଗେରିବାଲ୍' ରେ ଗରିବ କୃଷକପରିବାରର ନିଖୁଣ ଚିତ୍ର ପ୍ରଦର୍ଶିତ। ଅଧିକାଂଶ ପତ୍ରପତ୍ରିକାରେ ଲେଖକଙ୍କର ଗଳ୍ପ ଏବଂ ଅନ୍ୟାନ୍ୟ ରଚନା ପ୍ରକାଶିତ ହୋଇଥାଏ । ]

'ଖାଲି ଦୁଃଖ, ଦୁଃଖ, ଦୁଃଖ । ଖାଲି ଭୋକିଲା ପେଟ, ତୃଷ୍ଣା ଲାଗେ । ଏମିତି ଲହୁବୁହା କଥା ଶୁଣି ଶୁଣି ହାଲିଆ ଲାଗିଲାଣି ।'

'ତେବେ ?'

'ତେବେ—? ଦୁନିଆରେ କଅଣ ଆମୋଦ ଆହ୍ଲାଦ ନାହିଁ ? ହସ ଖେଳ ନାହିଁ ? ମଜ୍ଜା ମଜଲିସ୍ ନାହିଁ ?'

'ଅଛି ।'

'ତେବେ ସେଇ ଗପ କହୁନା । ଖାଲି ଦୁଃଖୀ, ଗରିବଙ୍କ କଥା ?'

'ଉଚିତ—କିନ୍ତୁ ତୁମେ ବୁଝିପାରିବ ନାହିଁ ।'

'ଅର୍ଥାତ୍ ?'

Digitized by srujanika@gmail.com

'ଅର୍ଥାତ୍ ଯେଉଁମାନଙ୍କର ଆମୋଦ ଅହ୍ଲାଦ, ହସ, ଖେଳ, ମଜ୍ଜକ ମଜଲିସ୍ ଭିତରେ ତମେ ବଢ଼ି ଆସିଛ, ତାକୁ ତୁମେ ବୁଝିପାରିବ; କିନ୍ତୁ ସେ ଆମୋଦ ଯେ କେତେ ଅସହାୟ ଗ୍ଲାନି ଉପରେ ଛିଡ଼ା, ସେ ହସ ପଛରେ ଯେ କେତେ ଶହ ଦୁଃଖୀର ତତଲ ଲୁହ ଜମି ରହିଛି, ସେ ମଜଲିସ୍ ଯେ କେତେ ଜୀଅନ୍ତା ମଣିଷର ଚର୍ବି ଜଳି ଆଲୋକିତ ହୁଏ, ତାହା ତମେ ବୁଝି ପାରିନ। ସେଥିପାଇଁ ତମେ ସୁଖୀ। ଆଜି ମୁଁ—ମୋ ଆଖିରେ ପଡ଼େ ବଡ଼ ଲୋକର ଆମୋଦ ପ୍ରମୋଦ ପଛରେ ମନୁଷ୍ୟତାର ମହାଶ୍ମଶାନର ଦୃଶ୍ୟ। ତାର ଭିତରେ ନାଚୁଥାଆନ୍ତି ବୁଭୁକ୍ଷିତର ପ୍ରେତ ସହିତ ଅସ୍ଥିର ହା-ହାକାର। କଥା ଫୁଟେ ନା, ସରସି, ମୁହଁରୁ କଥା ଫୁଟେ ନା।'

"ଆଜି ଏ ଗାଁର ଗରିବମାନେ—ତାଙ୍କର କଅଣ ହସ ଖୁସି ନାହିଁ? ସେ କଥା କହୁ ନା?"

"କହିବି, କିନ୍ତୁ ତମେ ବୁଝିପାରିବ ନାହିଁ। ତାଙ୍କ ହସକୁ ତୁମେ ଘୃଣା ଚକ୍ଷୁରେ ଦେଖ; ତାଙ୍କ ମଜ୍ଜ ତ ତମର ତାଚ୍ଛଲ୍ୟର ବିଷୟ। ନୁଚୁରା ମୁଣ୍ଡ, ଦେହରେ ମଳି ବସି ଫାଟି ଯାଇଛି, ଦେହରେ ଛିଣ୍ଡା ଲୁଗା, ହାତରେ ପଟେ ଲେଖାଏଁ ଭଙ୍ଗା କାଚ—ବୟସ ତାର ଧର ସତର ବର୍ଷ। ଆଜି ଜଣେ ମଣିଷ—ପୁରୁଷ, କୋଡ଼ିଏ ବର୍ଷ ପୂର୍ବେ ତାର ଜନ୍ମ। ଖାଦ୍ୟ ଅଭାବରେ ଛାତିର ହାଡ଼, ହାତର ଶିର ଦେଖା ଦେଉଛି। ଖଣ୍ଡେ ଛିଣ୍ଡା କନା ତାର ନଗ୍ନତା ଆବରଣ କରୁଛି। ଏ ଦୁହିଁଙ୍କୁ ତୁମେ ଯୁବତୀ ଯୁବକ କହିବ? ନା। ଅଚ୍ଛା, ଆଉ ଗୋଟାଏ କଥା ମନେକର। ଚୈତ୍ରମାସର ଦିପହର ଖରା ଚଡ଼କ ମାରୁଛି। ଦୁହେଁ ଦୁଇଅଡ଼ୁ ଅସି ବାଟ ପାଖରେ ଗୋଟାଏ

Digitized by srujanika@gmail.com

ବରଗଛ ମୂଳେ ଅଶ୍ରସ୍ତ କେଳେ । ବୁହିଁଙ୍କ ପେଟରେ ଭାଲ୍ ଦସ୍ତ୍ରହରୁ ଦାନା ମୁଠାଏ ପଡ଼ି ନାହିଁ । ବସନ୍ତର ସ୍ପର୍ଶ ଲାଗି ବରଗଛ ପତ୍ର ଝଡ଼ି ଯାଇଛି । ଫୁଟି ଅଷ୍ଟ୍ରୁ ବଅଁଲ ପତ୍ର । ତେଣୁ ଏମାନେ ବସିଛନ୍ତି ସେ ଗଛ ଗ୍ଛାଇରେ ନୁହେଁ—ଡାଳ ଗ୍ଛାଇରେ । ପୁରୁଷଟି କହୁଛ— 'ସୁଲ୍, କୁଆଡ଼େ ଯାଇଥିଲୁ ?'

ସ୍ତ୍ରୀଟି ହାତ ଠାରି କହୁଛ—ସେ ଗାଆଁ ଅଡ଼େ ।

ପୁରୁଷଟି କହୁଛ—କାହିଁ ମିଳିଲା ?

ସ୍ତ୍ରୀଟି କହୁଛ—ଦପୋଷ ଖେଣ୍ଡେ ।

ପୁରୁଷ କହୁଛ—ପଟନାୟକଙ୍କ ସ୍ତ୍ରୀକୁ ଦେଖିଛୁ ?

ସ୍ତ୍ରୀ—ହଁ ।

ପୁରୁଷ—କେମିତି ?

ସ୍ତ୍ରୀ—ସମିତି ନୁହେଁ ତ, ଙ୍ଗାଅନ୍ତା ଧାନ ଓଳିଆ । ସତେ ଯେମିତି ହାତୀ । ତୁ ଦେଖିଛୁ ପରା—କିମିତି ସେ କହୁଲୁ ?

ପୁରୁଷ—ପଟ୍ଟନାୟକଙ୍କ ସ୍ତ୍ରୀର ଅକାର ସତେ ଯେମିତି ତନି ଶହ ବର୍ଷ ତଳର ସେ ଗଛଟାର ଗଣ୍ଡି ।

ଦୁହେଁ ହସିପକାଇଲେ ଦୁହିଁଙ୍କ ଗୃହିଁ । ଉଦାହରଣଟା ଏଇଠି ଥାଉ । ଏଥିରେ କଅଣ ଖୁସୀ କଥା ନାହିଁ ? ଭୂସ ପେଟରେ ହସିବା, ଖୁସୀହେବା ସହଜ, କିନ୍ତୁ କ୍ଷୁଧିତ ପେଟ ଯେଉଁ ହସକୁ ଦବାଇ ଦେଇ ପାରିଲା ନାହିଁ, ନିଷ୍ଠୁର ଅଭାବ ଯେଉଁଠି ଖୁସୀକୁ ଚୂର୍ଣ୍ଣିଭୂତ କରିଦେଇ ପାରିଲା ନାହିଁ, ସାଧାରଣ ହସ, ଖୁସିଠାରୁ ତାହା କେତେ ଶକ୍ତିଶାଳୀ, କେତେ ଉଚ୍ଚରେ ଅବସ୍ଥିତ, ଏ କଥା ହୁଏତ ତୁମେ ବୁଝିପାରିବ ନାହିଁ ।

ସବସୀ କହୁଛ 'କହୁଲ ନାହିଁ, ମନେ ମନେ କ୍ଷୁବ୍ଧ ହେବ ।



Digitized by srujanika@gmail.com

ରବିବାବୁଙ୍କ ଦପ୍ତରରେ । ବସି ବସି ଗଳ୍ପ ହେଉଥିଲେ ସରସୀଙ୍କ ଘରେ । ସେ ମୋଠୁଁ ଗଳ୍ପ ଶୁଣିବାକୁ ଭଲପାଏ । ସେ ତାର ସମାଲୋଚନା କରେ, ସେଥିପାଇଁ ତା ମତ ଅନୁସାରେ ଗଳ୍ପ ଶୁଣିବା ପାଇଁ ତାର ଦାବୀ । ବଡ଼ଲୋକର ବୈଠକଖାନା ଭିତରେ ପ୍ରକୃତରେ ଦୁଃଖୀର ହା-ହାକାର ବଡ଼ ବେଖାପ ଲାଗେ । ବୈଠକଖାନା ଦୁଆରବନ୍ଧ ଆର ପାଖରେ ଦୁଃଖୀର ସ୍ଥାନ, ଦୁଃଖର ଛବିର ମଧ୍ୟ । ସେଥିପାଇଁ ସରସୀ ପକ୍ଷରେ ମଧୁର ଜ୍ୟୋସ୍ନା, ଉଜ୍ଜ୍ୱଳ ମଳୟ, ଗୋଲାପୀ ଅଞ୍ଚଳ ପଛେ ପଛେ ହାଲୁକା ପ୍ରେମର ଗୋଟାଏ ଖଚିତ ସମାବେଶ, ସତ୍ୟର ନିରାଡ଼ମ୍ବର ସରଳ ମୂର୍ତ୍ତି ଠାରୁ ଅଧିକ ଆଦରଣୀୟ । ଦୁନିଆର ଶତକଡ଼ା ଅନେକଶୋତ ଭାଗଟା ପ୍ରଭୃତି ଆଶି ବୁଦ୍ଧଦେବଙ୍କ ଅବଶିଷ୍ଟ ଗୋଟାକର ଅପ୍ରାକୃତିକ ଅସ୍ତିତ୍ୱକୁ ଉପଭୋଗ କରିବାକୁ ସର୍ବଦା ଅଭ୍ୟସ୍ତ । ତେଣୁ ସେମାନଙ୍କ ରୁଚିରେ ବୈଚିତ୍ର୍ୟ ଉପସ୍ଥିତ ହେବାହିଁ ସ୍ୱାଭାବିକ ।

ମୃଣାଳିନୀ ଦେଖିଲେ ଅନ୍ତର ରବିବାବୁଙ୍କ ଦପ୍ତରଟା ମାଟି ହେବାକୁ ବସିଛି । ପକ୍କା ଓକିଲର ପକ୍କା ଗୃହିଣୀ ସେ । କଥାର ଗତି ଫେରାଇ ଦେବା ପାଇଁ କହିଲା, "ଆପଣଙ୍କ ନିଜର କାହାଣୀ କିଛି ଅନୁଭୂତ ନାହିଁ ? ସେ କଥା କହୁ ନାହାନ୍ତି ?"

କହିଲି, "ହୁଏତ ଅଛି । ଜୀବନର ଖାତାକୁ କୌଣସି ଦିନ ଲେଉଟାଇ ଦେଖି ନାହିଁ—ଦେଖିବାର ଅବକାଶ ପଡ଼ି ନାହିଁ । ମୋ ପକ୍ଷରେ ବର୍ତ୍ତମାନ ଗୋଟାଏ ନିଷ୍ଠୁର ସତ୍ୟ । ତାକୁ ସମ୍ଭାଳିବା କଷ୍ଟକର—କାରଣ ଅନାଗତ ସହିତ ତାର ସମ୍ପର୍କ ଅତି ଘନିଷ୍ଠ । ବିଗତ ବର୍ତ୍ତମାନ ଓ ବିଗତର ଭବିଷ୍ୟତ ହିଁ ମୋର ଚିନ୍ତାଧାରାର କ୍ରୀଡ଼ାକ୍ଷେତ୍ର । ଅତୀତର ଇତିହାସ ଟେଣ୍ଡ଼ି ଘାଣ୍ଟି ଦେଖିବାର ଅବସର

Digitized by srujanika@gmail.com

ହୋଇନାହିଁ । କିନ୍ତୁ ଅତୀତର ଗୋଟାଏ ଘଟଣା ବେଳେ ବେଳେ ସ୍ମୃତି ଭିତରେ ଗଭୀର ରେଖାପାତ କରିଯାଏ । ସେଇ କଥାଟି ଅଛି କହୁଛି ।

'କ୍ଷମା ସୁନ୍ଦରୀ ।'

ସରସୀ ଉତ୍ସାହିତ ହୋଇ କହିଲ, 'ସମାଲୋଚନାର ଗୃହୀତ ନ ବାଛିଲ କି ଚଳେ ? ଏଥର ଠିକ୍ ବାଟକୁ ଆସିଲେ ।'

'ଆମ ଗାଁ ଭଗି ପଧାନର ସେ ଗୋଟିଏ ମାତ୍ର ଝିଅ । ଭଗିଅ ବୁଢ଼ାର ବୁଢ଼ାଅରେ ସେ ଗୋଟିକ ମାତ୍ର ଅବଶିଷ୍ଟ ରହିଥାଏ । ବୁଢ଼ାର ଘର ଘୁଞ୍ଚୁ ଡାକୁଥିଲ । ବୁଢ଼ୀ ଥିଲ, ଗୃହ ଗୃହ ପୁଅ ଥିଲେ, ଜମିବାଡ଼ି ଥିଲ, ହଳ ହଡ଼ା ଥିଲ । ବର୍ଷେ ଗାଁରେ ଝଡ଼ାମାଚ ରୂପେ ହଇଜା ଲାଗିଲ । ବୁଢ଼ା ଘରୁ ବୁଢ଼ୀ ଆଜି ତାର ଗୃହ ଗୃହଟା ବେଣ୍ଡିଅ ପୁଅ ମଶାଣିକୁ ଗଲେ । କର୍ପୂର ଯେପରି କମେ କମେ ଉଡ଼ିଯାଏ, ଭଗି ପଧାନର ସମ୍ପତ୍ତିବାଡ଼ି କିମେ କମେ ସେହିପରି ଉଡ଼ିଗଲ । ବୁଢ଼ାଅରେ ରହିଲେ, ବୁଢ଼ା ଆଜି ତା ଝିଅ କ୍ଷମା ।'

ସରସୀ ବ୍ୟଙ୍ଗ ସ୍ୱରରେ କହିଲ—'ଆଜି ସେମାନେ ଖାଇବାକୁ ପାଇଲେ ନାହିଁ । ଲୁହ ଝରୁ ଜଳଟ—Rotten sole stuff ।'

'କ୍ଷମା ସୁନ୍ଦରୀ । ତା ମାନେ ତମେମାନେ ଯଦି ତାକୁ ସୁନ୍ଦରୀ ବୋଲି ମନେକର—ବୁଝ । ଗରିବ ଚଷାର ଝିଅ ଯଦି ସୁନ୍ଦରୀ ହୋଇପାରେ ବୋଲି ତମର ଧାରଣା ହୋଇପାରେ—କହିପାର । ତାର ନୀଳବୁଇଙ୍ଗିନୀ ବେଣୀ ଅନ୍ଦୋଳିତ ହେବାର ସୁବିଧା ନ ଥିଲ; ହେୟାର ଅଏଲ୍ ନ ଥିଲ; ସାମ୍ନୁ ପାଉଡ଼ର ନ ଥିଲ ।

Digitized by srujanika@gmail.com

ହେୟାର ଫିକ୍ସ ନ ଥିଲା, ଆଜ ବେଣୀ ବାନ୍ଧିବା ପାଇଁ ପୂର୍ବପୁରୁଷଙ୍କ ଅମଳରେ ଛାପାଉଥିବା ଡ୍ରେସିଂ ଟେବୁଲ ରଖିବା ପାଇଁ ଡୁମେ ପଧାନ ଘରେ ସ୍ଥାନ ଅଛି କୁଆଡୁ ? ପୋମେଡ଼ମ୍, ପାଉଡ଼ର, ସ୍ନୋ, ଲିପଷ୍ଟିକ୍ର ସ୍ୱପ୍ନ ସେ କୌଣସି ଦିନ ଦେଖି ପାରି ନ ଥିଲା; ଆଜି ରଙ୍ଗବେରଙ୍ଗର ଶାଢ଼ୀ, ବ୍ଲାଉଜ୍, ବ୍ଲାଉଜ, ସାୟା, ସେମିଜ ସେ କୌଣସି ଦିନ ଦେଖି ନାହିଁ । ତରଳ ଅଲତା ଓ ସୁଗନ୍ଧି ତେଲ କୌଣସି ଦିନ ତାର ଶ୍ରୀଚରଣର ଶୋଭା ବର୍ଦ୍ଧନ କରିବାର ସୁବିଧା ପାଇନାହିଁ କିମ୍ବା ଫ୍ରେଞ୍ଚ ପରଫ୍ୟୁମ୍ କୌଣସି ଦିନ ମନୁଷ୍ୟଠାରେ କସ୍ତୁରୀମୃଗତ୍ୱ ଉତ୍ପାଦନ କରିବାର ସୁବିଧା ପାଇନାହିଁ ତା-ଠାରେ ।'

ମୃଣାଳିନୀ କହିଲା—'ଆପଣ ବଡ଼ ନିଷ୍ଠୁର ଭାବରେ ସରସୀଙ୍କୁ ଅଘାତ କରୁଛନ୍ତି ।'

ମୁଁ କହି ଚାଲିଲି—'କ୍ଷମା ଭିକ୍ଷା କରୁଛି । କିନ୍ତୁ ଡୁମା ଥିଲା ସୁନ୍ଦରୀ । ଦେବ ଦେବୀର ଝିଅ ସେ; ଛିଣ୍ଡା ଚେଦି ହିଁ ତାର ସମ୍ବଳ । ମୁଣ୍ଡରେ ମାସକରେ ଥରେ ତେଲ ପଡ଼େ କି ନା ସନ୍ଦେହ । ତାର ସୌନ୍ଦର୍ଯ୍ୟ ତରଳ ସୁନାପରି ଢାଙ୍କିଦେଉ ଥିଲା ନିଷ୍ଠୁରଙ୍କ ।'

'ଗାଆଁ ପାଖରେ ସାନ ନଈଟିଏ । ତା କୂଳରେ ତୋଟା । ସେଇ ତୋଟାରେ ବସି ସମୟ କଟାଇ ଦେବା ମୋର ଅଭ୍ୟାସ ।'

'ଡୁମା ଘାଟରେ ମାଟିଅଡ଼ିଏ ଧରି ଆସେ ପାଣି ନେବାକୁ, ଫେରିଯାଏ । ମୁଁ ଗାଆଁରେ ବଡ଼ଲୋକ ପିଲା କି ନା, ମୋତେ କୌଣସି ଦିନ ମୁହଁ ଟେକି ପଦେ କଥା କହିବା ସାହସ ସେ ସଂଗ୍ରହ କରି ପାରି ନାହିଁ ।

Digitized by srujanika@gmail.com

'ଧନେ ସକାଳୁ ଉଠି ଦେଖେ, ଝିଅଟା ଅଗ ଦ୍ୱାର ପାଖରେ ଛିଡ଼ା ହୋଇଛି ଅତି ସନ୍ତର୍ପଣରେ ।'

ପଚାରିଲି—'କୁଆଡେ ଅଛିରୁ ଝିଅ ?'

ସେ ତଳକୁ ଅନାଇ କହିଲା—'ବାପାକୁ ପାଞ୍ଚଦିନ ହେଲାଣି ଜ୍ୱର । ସେ ବଞ୍ଚାବଟି କରୁଛନ୍ତି ।'

ବୁଝିଲି ଔଷଧ ପାଇଁ ଆସିଛି । ଭଗିଆ ବୁଢ଼ାଟା ପ୍ରତି ଦିନଠୁ ମୋର ଗୋଟାଏ ସମ୍ମାନ ଥାଏ । ସେ ଖାଣ୍ଟି ଅଳ୍ପ ସିଧା ମଣିଷ । ଭାବିଲି, ଡାକ୍ତର ତ ନୁହେଁ ଯେ ଔଷଧ ଗାଳେ ପଠାଇ ଦେଇ ନିଶ୍ଚିନ୍ତ ରହିବ ।

କହିଲି—'ତୁ ଯା, ମୁଁ ଯାଇ ଦେଖିବି ।'

ଭଗିଆ ବୁଢ଼ା ବଞ୍ଚିଗଲା । ସେହି ଦିନୁ ଝିଅ ନିକଟରେ ବୋଧହୁଏ ମୁଁ ଗୋଟାଏ ଦେବତାଙ୍କ ରୂପ ଧରି ଛିଡ଼ା ହେଲି ।

ଝିଅ ଆଗପରି ଯାଏ ପାଣି ଆଣିବାକୁ । ମୋତେ ବି ଦେଖେ; ଆଗପରି କିଛି କହେ ନାହିଁ, କିନ୍ତୁ ମୋର ମନେହୁଏ ଯେତେବେଳେ ତା ମୁଣ୍ଡଟି ଦେଖି ଝୁଙ୍କିପଡେ ଆଗରୁ ।

କୌଣସି ଦିନ ମୁହଁ ଖୋଲି ସେ ମୋତେ ପଦେ କଥା କହୁ ନାହିଁ । ବାଟରେ ଦେଖାହେଲେ ସେ ଲାଜରେ ନଇଁପଡ଼ି ବାଡ଼ ମୂଳରେ ଛିଡ଼ା ହୁଏ, କିନ୍ତୁ ବେଳେ ବେଳେ ମୋର ଜାହିଁକି ମନେ ହୁଏ, ତାର ସ୍ନେହପୂର୍ଣ୍ଣ ଦୃଷ୍ଟି ମୋ ପଛେ ପଛେ ଧାଇଁ ଆସେ ।

ସେ ବର୍ଷ ଗାଆଁରେ ଲାଗିଲା ଭୀଷଣ ବସନ୍ତ । ଗୁଞ୍ଜା ଗୁଞ୍ଜା ହୋଇ ମଣିଷ ଝଡ଼ିପଡ଼ିଲେ ।

Digitized by srujanika@gmail.com

ମେଲଘରେ ବସି ଖବରକାଗଜ ଖଣ୍ଡ ପଢ଼ୁଥିଲି, ଧନିଆ ଭଣ୍ଡାରୀ ଆସି ପିଣ୍ଡାତଳେ ଛିଡ଼ାହେଲା ।

ଡାକିଲି—'ଉପରକୁ ଆ ।'

ସେ କହିଲା—'ନାହିଁ ବାବୁ । ବଡ଼ି ପଧାନ ଝିଅକୁ ମା-ବଡ଼େ ହୋଇଛନ୍ତି ।'

'କେତେ ଦିନ ହେଲା ରେ ?'

'ଆଜିକୁ ସାତଦିନ ହେଲା । ଜ୍ୱର ମାଡ଼ି ହୋଇଛନ୍ତି । ପିଲାଟା ପାଟିରୁ ରକ୍ତ ବାହାରୁଛି । ତାଲିଠୁଁ ମା ଆପଣଙ୍କ ଦେଖିବେ ବୋଲି ବ୍ୟସ୍ତ ହେଉଛନ୍ତି ।'

ଔଷଧ ପାଇଁ ହୋଇଥିବ । କି ଔଷଧ ଅଛି ଏ ରୋଗକୁ ? ହୁଏତ ବା ପ୍ରଳାପ ।

କହିଲି—'ଚାଲ ।'

ଘରେ ଯାଇ ଦେଖେ, ଅତି ସାଂଘାତିକ ରକମର ବସନ୍ତ ତାକୁ । ବଞ୍ଚିବା ଅସମ୍ଭବ ।

ପ୍ରଳାପ କରୁଛି ଜମା । ତା ମୁଣ୍ଡ ଉପରେ ଠାକୁରାଣୀ ସ୍ଥାପନା ହୋଇଛି ।

କିଛି ଦୂରରେ ବସିଲି, ଘର ଭିତରେ ।

ସାନ ଘରଟାର ବାୟୁମଣ୍ଡଳ ଭିତରେ ଥାଏ ଗୋଟାଏ ଉତ୍କଟ ଭୀଷଣତା । ମନୁଷ୍ୟର ଏ ଯନ୍ତ୍ରଣା ଦେଖି ତୁନି ହୋଇ ବସି ରହିବାଭଳି ଅକ୍ଷମତା ମନୁଷ୍ୟ ପକ୍ଷରେ ଅଭିଶାପ ବୋଲି ମନେ ହୁଏ ।

କିଛି ସମୟ ପରେ ଜମା ଆଖି ଫିଟାଇ ଚାହିଁଲା ମୋ ଆଡ଼କୁ । କି ଦୃଷ୍ଟିରେ କି ବତ୍ସଳତା । ଏତେ ବର୍ଷ ପରେ ମଧ୍ୟ ଆଜି ତାହା ଭୁଲି ପାରି ନାହିଁ ।

Digitized by srujanika@gmail.com

ତା ପାଖକୁ ଗଲି । କହିଲି—'ଉମା, କଅଣ କହୁଛୁ ?'

ସେ ମୋ ଆଡ଼କୁ ବିହ୍ୱଳ ଦୃଷ୍ଟିରେ ଚାହିଁଲା । ଧୀରେ ଧୀରେ କହିଲା—'ଏ ଜୀବନରେ ହୋଇ ପାରିଲା ନାହିଁ ।'

ତାର ଦମ୍ ବନ୍ଦ ହୋଇ ଆସୁଥାଏ । ଅସ୍ତେ ଅସ୍ତେ କହିଲା—'ତମ ଗୋଡ଼ ।'

ଧନି ବାରିକ ପାଟି କରି ଉଠିଲା—'ହାଁ, ହାଁ, ବାବୁଙ୍କୁ ଛୁଅଁ ନାହିଁ ।'

ମୋର କୋଳରେ ମୁଣ୍ଡ ରଖି ସେ ଶାନ୍ତ ହୋଇଗଲା ।

× × × ×

ଚାହିଁ ଦେଖେ, ସରସୀ ଲୁଗା କାନିରେ ଆଖି ପୋଛୁଛି ।

Digitized by srujanika@gmail.com

# ସ୍ରୋତର ଫୁଲ

ଲେଖକ—ସ୍ୱର୍ଗତ କବିଚନ୍ଦ୍ର କାଳୀପ୍ରସନ୍ନ ଦାଶ

—୧—

ଅପର୍ଣ୍ଣା ସେ ଦିନ ସ୍ୱାମୀର ସଦ୍ୟପ୍ରାପ୍ତ ଚିଠିଖଣ୍ଡିକ ଅତି ଆଗ୍ରହର ସହିତ ପଢ଼ୁଥିଲା । ପୋଇଲି ରମା-ମା' ଆସି ଡାକିଲା— "ମା !"

ଅପର୍ଣ୍ଣା ସ୍ୱାମୀର ପତ୍ରରେ ତନ୍ମୟ । ଶୁଣି ମଧ୍ୟ ଅଶୁଣା ପରି ଚିଠି ପଢ଼ି ଲାଗିଛି । ତନ୍ମୟ ହେବାର ହିଁ କଥା । ଅଳ୍ପ ତେର ବର୍ଷ ପରେ ଅନୁରୋଧ ରଖିବାକୁ ସ୍ୱାମୀ ସ୍ୱୀକୃତ ହୋଇଛନ୍ତି । ଏତେ କାଳ ପରେ ସେ ଯେ ପୁଣି ଅପର୍ଣ୍ଣାର ପିତ୍ରାଳୟକୁ ଯିବାକୁ ମଙ୍ଗିଛନ୍ତି, ଏହା କଣ କମ୍ ଭାଗ୍ୟର କଥା ? ଅପର୍ଣ୍ଣା ଅବଶ୍ୟ ବର୍ଷକ ଭିତରେ ତିନି ଚାରି ଥର ପିତ୍ରାଳୟକୁ ଧାଇଁଛି, କିନ୍ତୁ ତାର ସାନ ଭଉଣୀ ଉମାର ମୃତ୍ୟୁ ପରେ ସ୍ୱାମୀ ସରୋଜକୁମାର ଦିନକ ପାଇଁ ହେଲେ ମଧ୍ୟ ସେ ବାଟକୁ ଗୋଡ଼ ବଢ଼ାଇ ନାହାନ୍ତି; ଏମିତି କି ସେ ଅଞ୍ଚଳରେ ଥିବା କାଠର କାରବାରଟି ମଧ୍ୟ ହଠାତ୍ ବଦଳାଇ-ଦେଲେ । ନତୁବା ତାଙ୍କୁ ବର୍ଷକ ମଧ୍ୟରେ କମ୍ ପକ୍ଷରେ ସାତ ଥର ସେଆଡ଼େ ଦୌଡ଼ିବାକୁ ପଡ଼ନ୍ତା ।

Digitized by srujanika@gmail.com

ଚ୍ଚମାର ମୃତ୍ୟୁ ସଙ୍ଗେ ସଙ୍ଗେ ସରୋଜକୁମାର କାମିନୀ କଲ୍ପନା ହୋଇ ପଡ଼ିଲେ । ଅପର୍ଣ୍ଣା ଭାବିଲେ, ସ୍ୱାମୀ ଘନ ଘନ ସେଠାକୁ ଯିବା ଆସିବା କରୁଥିଲେ । ଉମା ତାଙ୍କୁ ପାଇଲେ ଅନାବେଳେ ବଡ଼ ଫୁର୍ତ୍ତିରେ ଧନ କଟାଏ ବୋଲି ମା ମଧ୍ୟ ସରୋଜ-କୁମାରକୁ ଶୀଘ୍ର ଶୀଘ୍ର ପାଇବାର କାମନା କରୁଥିଲେ । ବାଧବା ଉମା ଫେଣୋଇ ଅସିଲେ ଦୁଇ ଗୃହ ଧନ ବେଣ୍ ଥଣ୍ଡା ଝାପର କର ହାରମୋନିୟମ୍ ବଜାଇ ଗଳ୍ପ ସ୍ୱଳ୍ପରେ ଧନ କଟାଏ । ଅହା ! ବଗ୍ରୁଗ୍ର ମୁହଁରେ ଟିକାଏ ହସ ଦେଖି ମା ବାପର ମନରେ ଅନନ୍ଦ ଅସେ କ୍ଷଣକ ପାଇଁ ।

ବର୍ଷଟିଏ ମାତ୍ର ଏହିପରି ଯିବା ଆସିବା ପରେ ଉମାର ସ୍ୱାସ୍ଥ୍ୟ ଭାଙ୍ଗିପଡ଼ିଲା, ସେ ବାଇଦେ କାରସ୍ତ ହେଲେ । ସରୋଜ ସହରରୁ ତାଙ୍କ ବନ୍ଧୁ ଡାକ୍ତରଟିକୁ ନେଇଗଲେ । ଡାକ୍ତର ଦେଖି କହିଲେ— "ରୋଗ ସାଙ୍ଘାତିକ ।" ପ୍ରସ୍ତାବ ହେଲା, ପୁରୀ ଭଳିଆ ସ୍ୱାସ୍ଥ୍ୟକର ସ୍ଥାନରେ ରହି ଅବଲମ୍ବେ ଚିକିତ୍ସା କରାଇବାକୁ ହେବ । ସେତେ-ବେଳକୁ ମା ମଧ୍ୟ ପଡ଼ିଛନ୍ତି, ଚଳଚଳ ହେବାର ଶକ୍ତି ନାହିଁ । ତାଙ୍କୁ ସ୍ଥାନାନ୍ତରନ କରିବାକୁ କୌଣସି ଚିକିତ୍ସକ ମତ ଦେଲେ ନାହିଁ—କେଉଁ ମୁହୂର୍ତ୍ତରେ କଅଣ ଘଟିପାରେ । ସୁତରାଂ ସରୋଜ ଉପରେ ହିଁ ସମସ୍ତ ବନ୍ଦୋବସ୍ତ କରିବାର ଭାର ପଡ଼ିଲା । ସେ ପରଧନ ଲୋକବାକ ସଙ୍ଗରେ ନେଇ ଉମାକୁ ପୁରୀରେ ରଖି ଅସିବେ । ସେଠି ତାଙ୍କର ନିଜର ଘରଟିଏ ଅଛି ସମୁଦ୍ର କୂଳରେ । ସେଠି ଦୁଇଜଣ କର୍ମଚାରୀ ମଧ୍ୟ ଥାନ୍ତି । ଅଧିକନ୍ତୁ ଅତି ନିକଟରେ ଉମାର ମଉସା ମାଉସୀର ବସା, ସୁତରାଂ ଅସୁବିଧାର ଡର ଭୟ ନାହିଁ । ବରଂ ଶ୍ୱଶୁରଦେବୀ ଟିକାଏ ଅରୋଗ୍ୟ ହେଲେ ତାଙ୍କୁ ମଧ୍ୟ ସେଠାକୁ ପଠାଇ ଦିଆଯିବ ।

Digitized by srujanika@gmail.com

ତାହା ଆଉ କିଛି ଘଟିଲା ନାହିଁ । କିଛିଦିନ ପରେ ସମ୍ବାଦ ଆସିଲା, ଜମା ଆଉ ନାହିଁ । ସମୁଦ୍ର କୂଳରେ ତାହାର ମୃତଦେହ ମିଳିଛି । ହାହାକାର ଉଠିଲା । ସେତିକି ମାତ୍ର ସାର । ସ୍ନେହମୟୀ କନ୍ୟାର ଅକାଳ ମୃତ୍ୟୁରେ ପିତା ମାତା ବୁଢ଼େଇ ଜର୍ଜରିତ ହୋଇ ରହିଲେ । ସେହିଦିନଠାରୁ ସରୋଜକୁମାର ଆଉ ଶ୍ୱଶୁର ଘର ଆଡ଼କୁ ଗୋଡ଼ ବଢ଼ାଇଲେ ନାହିଁ । ଅପର୍ଣ୍ଣା ଅନେକ ଅନୁରୋଧ ଉପରୋଧ କରିଛି, କିନ୍ତୁ ତାର ସ୍ୱାମୀ ଗୌରୀଶଙ୍କର ଏହି ତେର ବର୍ଷ କାଳ ସେ ଅଞ୍ଚଳକୁ ମୁହଁ ଫେରାଇ ନାହାନ୍ତି । ଅପର୍ଣ୍ଣାର ଧାରଣା, ଏହା ଗୋଟାଏ ତୀବ୍ର ଶୋକର ଉଚ୍ଛ୍ୱାସ । ତୁଷ୍ଟ ହେଲେ କିନ୍ତୁ ଅନେକ କିଛି କହନ୍ତି—ଅବଶ୍ୟ ପରୋକ୍ଷରେ । ତେରବର୍ଷ ପରେ ସ୍ୱାମୀ ଯେ ତାର ପିତାକୁ ମଣୁଛନ୍ତି, ଏହା ଅପର୍ଣ୍ଣା ପକ୍ଷରେ କମ୍ ଆନନ୍ଦର କଥା ନୁହେଁ । ଅନ୍ତତ ଦଶ ବାରଟା ଦିନ ପରେ ସେ ଫେରିବେ ଲେଖିଛନ୍ତି, ଆସନ୍ତୁ ଚଞ୍ଚଳ ସେ । ଅପର୍ଣ୍ଣା ସମସ୍ତ ମନପ୍ରାଣ ଦେଇ ତାଙ୍କର ପ୍ରତ୍ୟାବର୍ତ୍ତନ କାମନା କରୁଥିଲା ।

ରମା-ମା ପୁଣି ଡାକିଲା, "ମା !"

ଅପର୍ଣ୍ଣା ସଚେତ ହୋଇ କହିଲା, "କଣ ଲୋ ?"

"ଗୋଟିଏ ବାର ତେର ବର୍ଷର ପିଲା ଆସିଛି ମା । ଯିମିତ କଳା, ସିମିତ ରୂପ । କି ସୁନ୍ଦର ଗାଉଛି ।"

"କାହିଁ ଲୋ ?"

"ଆମ ଦୁଆରେ । ଡାକିବି ?"

"ଡାକ ।"

ରମା-ମା ସଙ୍ଗରେ ଆସି ଯେଉଁ ବାଳକଟି ଛିଡ଼ା ହେଲା, ତାର ଅପରୂପ ଦେଖି ଅପର୍ଣ୍ଣା ମୋହିତ ହେଲା । ଯେଉଁ ଏକ

Digitized by srujanika@gmail.com

ଅଧଭଙ୍ଗା ସୁଖସ୍ୱପ୍ନର ସ୍ମୃତି ପରି ଏ ଘଟଣା—ମନେ ପଡ଼ି ପଡ଼ି ପଡ଼ୁନାହିଁ ।

ଅପର୍ଣ୍ଣା ପଚାରିଲା, "ତମ ନାମ ?"

"ଅନାଥ ।"

"ତମର କିଏ ଅଛି ?"

"ଦାଦୁ ଖାଲି ।"

"ଆଉ କେହି ନାହାନ୍ତି ?"

"ନା—ମା ।"

ସନ୍ତାନବଞ୍ଚିତା ଅପର୍ଣ୍ଣା ମା ଡାକରେ ତରଳିଗଲା । କି ସୁଧାଭରା ଡାକ । ଏହିପରି ତାର ଗୋଟିଏ ପିଲା ଥିଲେ·········

ଅହା, ବଚରାର ବାପା ମା କେହି ନାହିଁ । ଦୁଆରେ ଦୁଆରେ ଭିକ ମାଗି ଦିନ କଟାଉଛି ।

"ତମ ଘର କେଉଁଠି ବାବା ?"

"ଅନେକ ଦୂର ମା—ରାମପୁର । ସେଠି ଆମେ ଦୁହେଁ ଥିଲୁ—ଦାଦୁଭାଇ ଆଉ ମୁଁ । ମୋତେ ପଢ଼ାଇବା ପାଇଁ ଦାଦୁଭାଇ ଗାଁ ସ୍କୁଲରେ ନାମ ଲେଖାଇବାକୁ ଗଲେ । ଗାଁ ଲୋକେ ଦାଦୁଭାଇଙ୍କୁ କେତେ କଣ କହି ତଡ଼ିଦେଲେ । ମୋତେ ସ୍କୁଲରେ ଭର୍ତ୍ତି ମଧ୍ୟ କଲେ ନାହିଁ ।

"କାହିଁକି ?"

"ମୁସଲମାନ ବୋଲି । ସେ ମଧ୍ୟ ଗାଡ଼ି ଜମିବାଡ଼ି ବିକି ଗୁଡ଼ିଏ ଟଙ୍କା ପଇସା ସବୁ ନେଇ କୁସୁମପୁର ଗ୍ରାମକୁ ଆସିଲେ । ସେଠାରେ ଜମିବାଡ଼ି ଖରିଦ କଲେ । ମୁଁ ମଧ୍ୟ ସ୍କୁଲରେ ସ୍ଥାନ ପାଇଲି; କିନ୍ତୁ

Digitized by srujanika@gmail.com

ସେଠାକା ଜମିଦାର ବଡ଼ ନିର୍ଦ୍ଦୟ । ସେ ବର୍ଷର ମଲୁଡ଼ି ଯୋଗୁଁ ଦାଦୁଭାଇ ଖଜଣା ଦେଇ ପାରିଲେ ନାହିଁ । ଜମିବାଡ଼ି ସବୁ ସେ ଜମିଦାର ନିଲାମ କରି ନେଲେ । ଦାଦୁଭାଇ ତାଙ୍କ ଗୋଡ଼ତଳରେ ପଡ଼ି ସମୟ ମାଗିଲେ, ମୁଁ କେତେ କାନ୍ଦିଲି; କିନ୍ତୁ କିଛି ହେଲା ନାହିଁ । ଧକ୍କା ମାରି ଆମକୁ ତଡ଼ିଦେଲେ ସେ । ମୋ ପଢ଼ାଶୁଣା ଗଲା । ପେଟ ଚଳାଇବା ପାଇଁ ଦାଦୁ ସାଙ୍ଗରେ ଭିକ ମାଗି ବୁଲୁଛି ।"

"ଏଠାକୁ କେତେ ଦିନ ହେଲା ଆସିଛ ?"

"ଦୁଇଦିନ ହେଲା ।"

"କେଉଁଠି ଅଛ ବାପ ?"

"ଧର୍ମଶାଳାରେ । ଆଜି କିନ୍ତୁ ସେଠି ରହିବାକୁ ମିଳିବ ନାହିଁ ।"

"କାହିଁକି ?"

"ତିନି ଦିନରୁ ଅଧିକ କାହାରିକି ରହିବାକୁ ଦେବା ମନା ଅଛି ପରା ।"

"ଅଚ୍ଛା, ପୁଅ, ମୁଁ କାଲି କହିଦେବି । ଯେତେଦିନ ଇଚ୍ଛା ତମେ ରହିବ ।"

"କହିଦେବେ ମା ?"

"ନିଶ୍ଚୟ ।"

"ଦାଦୁ ମୋର ଅସୁସ୍ଥ । ତେଣୁ ଆଜି ଗାଁକୁ ଯିବାର ସାହସ—ନାହିଁ ।"

"ନା, ନା, ସେ ଭଲ ନ ହେବାଯାଏ କୁଆଡ଼େ ଯିବାର ପ୍ରୟୋଜନ ନାହିଁ । ତମେ ନିତି ଆସି ଗୀତ ଶୁଣାଇବ, କିମିତ ?"

"ହଁ, ମା । ଏହାହିଁ ତ ଆମ ବେଉସା"—କହି ଅନାଥ ଗାଇବାକୁ ଲାଗିଲା—

Digitized by srujanika@gmail.com

ଅଫଳା ଜୀବନ ସଫଳ କର,
ଯାର ଲାଗି ଏ ତୀବ୍ର ଦାହନ
ତାକୁ ଟାଣି ଆଣି ବକ୍ଷେ ଧର ।
ଭାବନାରେ ମନ ଉତ୍କଣ୍ଠା
ସ୍ୱଳ୍ପବସ୍ଥାନ ଲୁପ୍ତ ଆଶା,
ସବୁ ଯେ ରେ କର୍ମନାଶା, ପରହର ପରହର ।

ପାଇଲା ଅଶାନ୍ତିବନ୍ତ—ସାରା ଦିନ ଗାଁଯାକ ଘୂରି ବୁଲି ମଧ୍ୟ ଏତେ ପାଆନ୍ତା ନାହିଁ ସେ । ଭଲ ହେଲା—ଦାଦୁଭାଇଙ୍କୁ ତାର ଖବରରେ ଅଜ ଅଉ ବୁଲିବାକୁ ହେବ ନାହିଁ ।

ଅପର୍ଣ୍ଣା କହିଲା, 'କାଲି ପୁଣି ଆସିବୁ, ବାପ ।'

"ସେ କଥା ଅଜ କହିବାକୁ ଅଛି ମା ? ଆସେ ତେବେ ମା ।'—କହି ପ୍ରଣାମ କରି ଅନାଥ ମେଲାଣି ନେଲା । ଶୁଖିଗଲା ଅପର୍ଣ୍ଣାର ଅଜଣା ନିର୍ଝରର ସ୍ନେହ ପୁଲକର ଧାରାସବୁ ।

—୨—

ଅନାଥ ପ୍ରତ୍ୟହ ଯାଇ ଅପର୍ଣ୍ଣା ପାଖରେ ଗୀତ ଗାଇ ଯାହା ଅଣେ, ସେଥିରେ ହିଁ ତାର ଓ ଦାଦୁଭାଇର ପରମ୍ପର୍ଣ୍ଣ ଅହାର ହୁଏ । ପ୍ରଥମ ସାକ୍ଷାତରେ ହିଁ ଅନାଥ ଅପର୍ଣ୍ଣାକୁ ଅକୃଷ୍ଟ କରିଥିଲା । ଅଠ ଦଶଦିନ ପ୍ରତ୍ୟହ ଯିବା ଅସିବାରେ ଘନିଷ୍ଠତା ବଢ଼ିଗଲା ।

ସେ ଦିନ ଅନାଥର ଅସିବା ବେଳ ଗଡ଼ିଯିବାରୁ କମିତ ଛଟପଟ ହୋଇ ଉଠିଲା ଅପର୍ଣ୍ଣା । ଅସୁ ନାହିଁ କାହିଁକି ସେ ? ନଅଟା ବାଜିଲା, ଦଶଟା ବାଜିଲା—ତଥାପି ନାହିଁ । ବେଳ ବଢ଼ିବା ସଙ୍ଗେ

Digitized by srujanika@gmail.com

ସଙ୍ଗେ ଅପର୍ଣ୍ଣାର ଇଚ୍ଛାଶ୍ରୀ ମଧ୍ୟ ବଢ଼ି ଚାଲିଲା । ଅସ୍ଥିର ହୋଇ ସେ ମନକୁ ଶାସନ କଲା—ଇଚ୍ଛାଶ୍ରୀ ଗିଲା, ହୁଏତ କୌଣସିଠାରେ ବେଶୀ କିଛି ପାଇବାର ଆଶା କରି ଧାଇଁଛି । ତା ପାଇଁ ଏତେ ମୁଣ୍ଡବ୍ୟଥା ତାହାଙ୍କ ? ଅପର୍ଣ୍ଣାର କିଏ ସେ ? ଅଭିମାନରେ ସାରା ଭୁରୁଟି ଭରିଗଲା ତାର । ସେ ନିଜର କେହି ହୋଇଥିଲେ...... ।

ନା, ନା, ନା, ତା କଥା ଆଉ ଭାବିବ ନାହିଁ ସେ । ଅପର୍ଣ୍ଣା ଉଠି ରାଧାନାଥ ଗ୍ରନ୍ଥାବଳୀ ଖଣ୍ଡିକ ବାହାର କରି ପଢ଼ିବାକୁ ବସିଲା । କବିଙ୍କର ପଦ ପଢ଼ୁ ପଢ଼ୁ ଅପର୍ଣ୍ଣାର ମନ ଧାଇଁଲା ଅନାଥ ପାଖକୁ । ଯଦି ତାର କିଛି ପୀଡ଼ା ହୋଇଥାଏ, ଧର୍ମଶାଳାରେ ପଡ଼ି କେତେ କଷ୍ଟ ପାଉଥିବ । ଟୋପାଏ ଔଷଧ କଥା ଛାଡ଼ିଲୁ ଥାଉ, ହୁଏତ ଗଣ୍ଡିଏ ଖାଇବାକୁ ମଧ୍ୟ ପାଇ ନ ଥିବ ଆଜି । ହୁଏତ ଦାଦୁ ତାର ଉପବାସ ଜଳ ଧରି ଦୁଆରେ ଦୁଆରେ ବୁଲୁଛି; ଅନାଥ ଟୋପାଏ ପାଣି ପାଇଁ ଛଟ-ପଟ ହେଉଛି । ଉଦ୍‌ବିଗ୍ନା ଅପର୍ଣ୍ଣା କେତେ କଣ ଭାବି ଭାବି ଅସ୍ଥିର ହୋଇ ଉଠିଲାବେଳେ ଗ୍ରମା-ମା ଆସି କହିଲା, "ଆଜି ତମ ଅନାଥ......।"

•

ଅପର୍ଣ୍ଣା ଜ୍ୱଳି ଉଠି କହିଲା, "ମୋ ଅନାଥ କଅଣ ଲୋ ?"

"ସେହି ଛୁଆଟି ମା, ଆଜି ବଡ଼ ବିପଦରେ ପଡ଼ିଛି । ଦାଦୁ ତାର କାଲି ରାତିରୁ ବଡ଼ ପୀଡ଼ିତ । ବିଚରା ପାଦେ ହେଲେ କାହିଁ ଘୁଞ୍ଚି ପାରୁ ନାହିଁ । ମୋତେ ଦେଖି କେତେ ବିକଳ ହୋଇ କହିଲା, "କଣ ହେବ ମୋର ଦାଦୁର ? ଏପରି ରୋଗ ତ ତାଙ୍କର କେବେ ହୁଏ ନା । ମୁଁ ଏତେ ଡାକୁଛି କିନ୍ତୁ ମୋ କଥାର ଉତ୍ତର ନ ଦେଇ କେତେ କଣ ବକୁଛନ୍ତି ସେ । ମା'କୁ କହିବ, ସେ ଭଲ ହେଲେ ମୁଁ ଯାଇ ତାଙ୍କୁ ଗୀତ ଶୁଣାଇ ଆସିବି ।"

Digitized by srujanika@gmail.com

"ଗୀତ ନ ଶୁଣିଲେ ତ ମୋର ଦିନ ସରୁ ନାହିଁ ? ଯେତେ ସୌନ୍ଦର୍ଯ୍ୟର କଥା ଅଣି ଘରେ ପୂରାଇବା ତୁମମାନଙ୍କର ଗୋଟାଏ କାମ ହୋଇଛି, ନା ! ରହ, କାଲିଠୁ ସମସ୍ତଙ୍କର ବାହାର ବୁଲିବା ବନ୍ଦ କରୁଛି ।"

ଅଜି ଯେତେ ଦଣ୍ଡ ଦେଲେ ରମା-ମା ସହିବ—ସହି ପାରିବ—କିନ୍ତୁ 'ବାହାର ବନ୍ଦ' ଏକାବେଳକେ ଅସହ୍ୟ ତାର ।

ମାଲିକକୁ ତ ଭଲକରି ଜାଣେ ସେ । ପିଲାଟି ଦିନରୁ ତାଙ୍କରି ପାଖରେ ରହିଛି ସେ । କେଉଁଠାରେ ଅଘାତ କଲେ ଅବରଣ ଭେଦି ସ୍ନେହ-ନିର୍ଝରର ସନ୍ଧାନ ମିଳିବ, ତାକୁ ତାହା ଭଲରୂପେ ଜଣା । କହିଲା, "ଅହା, ବେଳ ଗଡ଼ିବାକୁ ବସିଲାଣି, ବଚସ୍ତ ଦାନ୍ତରେ କୁଟାଖିଏ ମଧ୍ୟ ଦେଇ ପାରି ନାହିଁ । ନିତ ଅଣନ୍ତି, ନିତ ଖାଆନ୍ତି । ବଚସ୍ତ ତ ଦାଦୁଙ୍କୁ ଛାଡ଼ି ପାଦେ କୁଆଡ଼େ ଯାଇ ପାରୁ ନାହିଁ !"

"ଭଣ୍ଡାର ଘର ଚାବି ତ ମୁଁ ପଣନ୍ତ କାନିରେ ବାନ୍ଧି ରଖି ନାହିଁ ? ପିଲାଟିଏ ଯେତେ ବେଳ ଯାଏ ପେଟ ଖାଇ ନାହିଁ, ଟିକିଏ ଖାଇବାକୁ ଦେଇ ଆସିବାକୁ ମନା କରୁଛନ୍ତି କିଏ ? ଦୟା ତ କରୁଛନ୍ତି ଭଉଛନ୍ତି, କିନ୍ତୁ ଟିକିଏ ପରିଶ୍ରମ କରିବାକୁ ମଧ୍ୟ ରାଜରାଣୀମାନଙ୍କୁ ଅବସର ନାହିଁ ।"

ରମା-ମା ଚୁପ୍‌ ହୋଇଯାଇଥାଏ । ଅଟଣ୍ଠୀ ଡାକିଲା, "ହଇଲେ, ରମା-ମା !"

ରମା-ମା ଫେର ଛୁଡ଼ା ହେଲା । ଅଠସ୍ତୀ କହନ୍ତି "ହଇଲେ ଖାଇବାକୁ ଆଜି ନ ହେଲା ଦେଇ ଅସିଲ୍, ଅବା ପାଞ୍ଚଦିନ କ

Digitized by srujanika@gmail.com

ସାତଦିନ ହେଲା, କିନ୍ତୁ ତୁହାର ଯଦି ଭଲ ମନ୍ଦ କିଛି ଘଟେ, ତେବେ ଦୁଧର ପିଲା ଅନାଥ କଣ ହାତ ପୋଡ଼ି ରାନ୍ଧି ଖାଇ ପାରିବ ? ସେତେବେଳେ କଣ ହେବ କହିଲ ?"

"ଅହା, ବଡ଼ ଦୁଃଖୀ ସେ ମା ।"

"ଅହା ! ଭାବି କରି ଫଳ କଣ ? ଯା ସରକାର ବାବୁଙ୍କୁ କହି ବିପିନ ଡାକ୍ତରଙ୍କୁ ନେଇଯିବୁ । ରୋଗୀର ପଥ୍ୟାପଥ୍ୟ, ଔଷଧପତ୍ର ଯାହା ଲାଗେ ଆମ ଏଠାରୁ ଯେପରି ଦିଆହୁଏ । ପ୍ରୟୋଜନ ବୁଝିଲେ ସରକାର ଯେମିତି ରାତିରେ ସେଠି ରହିବା ପାଇଁ ଚାକର ଦୁଇଜଣଙ୍କୁ ରଖି ଆସନ୍ତି । ବାବୁ ଘରେ ନାହାନ୍ତି ବୋଲି ଯେ ମୋର ଶ୍ୱଶୁରଙ୍କ ପ୍ରତିଷ୍ଠିତ ଧର୍ମଶାଳାରେ ଆସି ଅଚିକିତ୍ସାରେ କେହି ମରିବ, ଏହା ମୁଁ ଦେଖି ଶୁଣି ଚୁପ ହୋଇ ରହି ପାରିବି ନାହିଁ ।"

—୩—

ଅପର୍ଣ୍ଣାର ଆଦେଶମତେ ଡାକ୍ତର, କବିରାଜ, ଔଷଧ, ପଥ୍ୟର କିଛିମାତ୍ର ତ୍ରୁଟି ଘଟିଲା ନାହିଁ । ତା ଅନୁଗ୍ରହ ପାଇ ନ ଥିଲେ ଏତେ ସବୁ ମିଳିବା ବୃଦ୍ଧ ମହେଶ୍ୱର ପକ୍ଷରେ ସ୍ୱପ୍ନ ମାତ୍ର । ନିୟତି କିନ୍ତୁ ଦୁର୍ବାର । ବିଧାତା ପ୍ରେରିତ ବିଧି କାଳାକାଳ ନିର୍ଣ୍ଣୟ ନ କରି ସୁବିଧା ଅସୁବିଧା ନ ବୁଝି, ଆକାଶର ବଜ୍ରଭଳି ଯେତେବେଳେ ଯାହା ଶିରରେ ଆସି ପଡ଼େ କି ଉଦ୍ଦେଶ୍ୟ ନେଇ ମାନବ ବୁଦ୍ଧିର ଚିର ଅଗମ୍ୟ ତାହା । ମହେଶ୍ୱର ସାର ଅବସ୍ଥା କ୍ରମଶଃ ଖରାପ ଆଡ଼କୁ ବାୟୁଗତିରେ ଧାଇଁ ଚାଲିଲା । ମୃତ୍ୟୁର ଅଳ୍ପକ୍ଷଣ ପୂର୍ବେ ଅନାଥ ମୁଣ୍ଡରେ ହାତ ରଖି ଅତି କ୍ଷୀଣ କଣ୍ଠରେ କହିଲେ ଦାଦୁଭାଇ, "ଚାଲିଲି ।"

Digitized by srujanika@gmail.com

ଅନାଥ କାନ୍ଦ କାନ୍ଦ ହୋଇ ମୁହଁ ପାଖରେ ମୁହଁ ରଖି କହିଲା—"ଛି ବାବୁ, ଇମିତି କହନା । ମୋତେ ଯେ ବଡ଼ ଦୁଃଖ ହେଉଛି ।"

"କଅଣ କହିବି ବାବୁ, ତୋତେ ଛାଡ଼ି ଯିବାକୁ କି ମୋର କମ୍ କଷ୍ଟ ହେଉଛି ? ବଡ଼ ଦୁଃଖ ରହିଲା ରେ, ତୋର ଗୋଟାଏ କିଛି ବନ୍ଦୋବସ୍ତ କରିଦେଇ ଯାଇ ପାରିଲି ନାହିଁ । ସ୍ତ୍ରୀ, ପୁଅ, କନ୍ୟା ଏକେ ଏକେ ସମସ୍ତଙ୍କୁ ହରାଇ ଫକୀର ହେବାକୁ ବସିଲାବେଳେ ମୋର ଗୁରୁଦେବ ବ୍ରହ୍ମାନନ୍ଦ ସ୍ୱାମୀ ଆଣି ତୋତେ ମୋଠାରେ ରଖି ହରଦ୍ୱାର ଗଲେ । ସେତେବେଳେ ତୁ ଦୁଇ ବର୍ଷର ପିଲା । ହରଦ୍ୱାରରେ ସ୍ୱାମୀଜୀଙ୍କର ସମାଧି ହେଲା । ସେ ଆଉ ଫେରିଲେ ନାହିଁ । ତୋତେ ନେଇ ନୂଆ କରି ସଂସାର ପତାଇ ବସିଲି"—କହି ବୃଦ୍ଧ ଅବଶ ହୋଇ ପଡ଼ିଲେ । ଇଙ୍ଗିତ କଲେ, ମୁହଁରେ ପାଣି ।

ଅନାଥ ପାଲରୁ ପାଣି ନେଇ ମୁହଁରେ ଦେଲା । ମହାପ୍ରଦୀପ ସା ଅପ୍ରାଣ ଚେଷ୍ଟା କରି ପୁଣି କହିଲେ, 'ବାବୁ ଭାଇ, ସ୍ୱାମୀଜୀଙ୍କର ଆଦେଶ ଥିଲା, ତୋତେ ଛାଡ଼ିଯିବା ପୂର୍ବରୁ ତୋର ପରିଚୟ ବାକ୍‌ସଟି ତୋର ହାତରେ ଟେକି ଦେବା ପାଇଁ । ସେଥିପାଇଁ ଏତାରବର୍ଷ କାଳ ଏହି ଛୋଟ ବାକ୍‌ସଟିକୁ ଯତ୍ନ କରି ରଖିଥିଛି । ଦେଖ ବାବୁ, ମୋର ଥଳରେ ଅଛି ସେଇଟି । ତୋର···।'

ବୃଦ୍ଧଙ୍କର ଆଉ କଥା କହିବା ଶକ୍ତି ନ ଥିଲା । ଅନାଥ ଭାବିଲା, ସେ କ୍ଲାନ୍ତ ହୋଇ ପଡ଼ିଛନ୍ତି; କିନ୍ତୁ ଡାକ୍ତର ଆସି ନାଡ଼ି ଛପି ମୁହଁ ବଙ୍କାଇ କହିଲେ, 'ସବୁ ଶେଷ ।' ଅନାଥ ହାହାକାର କରି ଉଠିଲା । ଦୁଃଖର କୋଳରେ ମଣିଷ ଦୁଃଖ ସହି ବାକୁ ଶିଖିଛି



Digitized by srujanika@gmail.com

ସେ । ଅପର୍ଣ୍ଣାର ଉଦ୍‌ଯୋଗରେ ଲୋକଜନ ନେଇ ଦାଦୁ ସ୍ୱର୍ଗତ୍ୱ' କବରରେ ୧୨ଟା ବେଳେ ଦେଇ ସଦ୍ୟସ୍ନାତ ଅନାଥ ଥଳ ଦୁଇଟି ଧର ଅପର୍ଣ୍ଣା ପାଖରେ ଯାଇ ଛିଡ଼ା ହେଲା । ତାକୁ ନାନା ପ୍ରକାରରେ ପ୍ରବୋଧ ଦେଇ ଶାନ୍ତ କର ଅପର୍ଣ୍ଣା ନିଜେ ପାଖରେ ବସି ଖୁଆଇବାକୁ ଲଗିଲ । ଅନାଥର ମ୍ଳାନ ମଧୁର ମୁହଁଟି ଗୃହିଁ ଅପର୍ଣ୍ଣାର ପ୍ରାଣ କାନ୍ଦୁଥିଲେ ସୁଦ୍ଧା ଦାଦୁଭାଇର ଛାଡ଼ିଯିବା ବ୍ୟଥାଟି ହାଲୁକା କର ଶିଶୁକୁ ଶାନ୍ତ କରିବାପାଇଁ ଅପର୍ଣ୍ଣା କହିଲ, "ଅନାଥ, ତୁ ମୋ ପାଖରେ ରହିବୁ ? ଏଠି ଥାଇ ପଢ଼ିବୁ, ଶୁଣିବୁ, ବଡ଼ ହେବୁ, ବଡ଼ ଗୁଣିଆ ହେବୁ, କେତେ ଗରିବ ଦୁଃଖୀର ଦୁଃଖ ବୁଝିବୁ । ରହିବୁ ତ ?'

'କୁଅଡ଼େ ଯିବି ମା ? ମୋର ଯେ କେହି ନାହିଁ ।"

'ମୁଁ ତୋର ମା ଅଛି ।'

ଖିଆ ପିଆ ସାର ଅନାଥକୁ ତାର ଥଳ ଦୁଇଟି ସଜାଲ୍ କରିବାର ଦେଖି ଅପର୍ଣ୍ଣା କହିଲ, 'ଏଥିରେ କଅଣ ଅଛି ବାପା ?'

'କିଛି ନାହିଁ ମା, ମୋର ପରିଚୟ ।'

'ପରିଚୟ ?'

'ଦାଦୁଜୀ ତାଙ୍କ ଗୃହୁ ଦେଇଥିଲେ, ଯିବାବେଳେ ମୋତେ ଦେବା ପାଇଁ ।'

କୌତୂହଳୀ ଅପର୍ଣ୍ଣା ସାଗ୍ରହରେ ହାତ ବଢ଼ାଇ କହିଲ—'ଦେଖେଁ ।'

ଅନାଥ କିରିସିନିପଟାର କ୍ଷୁଦ୍ର ବାକ୍ସ ଖଣ୍ଡିକ ବଢ଼ାଇଦେଲ । ବାକ୍ସଟି ଖୋଲ ଦେଇ ଗୁରପଟରୁ ବନ୍ଦ । ଅପର୍ଣ୍ଣା ଅତି କଷ୍ଟରେ ବାକ୍ସ ଭାଙ୍ଗି ଦେଖେ ମୂଲ୍ୟବାନ ବନାରସି ଶାଢ଼ୀଟିଏ, ସୁନାର

Digitized by srujanika@gmail.com

ହାର ଖଣ୍ଡିଏ, ପଚ୍ଚଶ ଟଙ୍କାର ନୋଟ୍ ପାଞ୍ଚଗୋଟି ଓ କାଗଜ ଖଣ୍ଡିଏ ରହିଛି । ସର୍ବପ୍ରଥମେ କାଗଜଟି ଖୋଲି ଦେଖିଲା । ଲେଖା ରହିଛି—

"ଓଁ ଗୁରବେ ନମଃ । ୩ ବୈଶାଖ ସନ ୧୯୩୨ ସାଲ ପୁରୀଧାମରେ ସମୁଦ୍ର କୂଳରେ ବ୍ରାହ୍ମ ମୁହୂର୍ତ୍ତରେ ଏହି ଶାଢ଼ୀରେ ଜଡ଼ିତ ସଦ୍ୟପ୍ରସୂତ ଶିଶୁଟିକୁ ପାଇଲି । ଅଳ୍ପକ୍ଷଣ ପୂର୍ବେ ଏହାର ଜନ୍ମ ହୋଇଥିଲା । ପ୍ରସବ ଚିହ୍ନ ସେତେବେଳ ଯାଏ ଦେହରୁ ଅପସାରିତ ହୋଇ ନାହିଁ । ଲୁଗାରେ ବନ୍ଧା ଥିଲା ଏହି ହାର ଓ ନୋଟ ପାଞ୍ଚଗୋଟି । ଅଧିକ କ୍ଷଣ ଶିଶୁଟିକୁ ଏ ଅବସ୍ଥାରେ ପକାଇ ରଖିଲେ ମୃତ୍ୟୁ ଅନିବାର୍ଯ୍ୟ ଜାଣି ମୋର ଶିଷ୍ୟ ନଗେନ୍ଦ୍ର ବସୁଙ୍କ ଘରକୁ ନେଇ ଗଲି । ଶିଶୁର ଜନ୍ମସନ୍ଧାନ ପାଇଁ ନାନାପ୍ରକାର ଚେଷ୍ଟା କଲି; କିନ୍ତୁ ବୃଥା ହେଲା—କୌଣସି ସନ୍ଧାନ ପାଇଲି ନାହିଁ । ସେଠାରେ ଶିଶୁର ଆଦର ଯତ୍ନର ତ୍ରୁଟି ହେବ ନାହିଁ ଜାଣି ସୁଦ୍ଧା ଏକମାସ ପରେ ତାକୁ ନେଇ ଆସି କୁମିଲ୍ଲାରେ ମୋର ଏକ ପୁତ୍ରହୀନା ବିଧବା ଶିଷ୍ୟାଠାରେ ଲାଳନପାଳନର ଭାର ଦେଇ ନିଶ୍ଚିନ୍ତ ହେଲି । କିନ୍ତୁ ଦୁର୍ଭାଗ୍ୟ, ଠିକ୍ ଦୁଇ ବର୍ଷ ପରେ ସେ ଇହଧାମ ତ୍ୟାଗ କଲା । ପୁଣି ଶିଶୁର ଭାର ମୋ ଉପରେ ପଡ଼ିଲା । ଏ ସମୟରେ ମୋର ହରିଦ୍ୱାର ଯିବାର କଥା । ଗୁରୁଦେବଙ୍କ ଆଦେଶ ହୋଇଛି, କୁମ୍ଭମେଳାରେ ଯାଇ ଉପସ୍ଥିତ ହେବାକୁ ହିଁ ପଡ଼ିବ । ବାଧ୍ୟ ହୋଇ ,ଶିଶୁଟିକୁ ପରମ ଧାର୍ମିକ, ଉଦାର ଭକ୍ତ ଶିଷ୍ୟ ମହେନ୍ଦ୍ରଠାରେ ରଖିଯାଉଛି । ଫେରି ଆସିଲେ ଏହାର ଭବିଷ୍ୟତ୍ ଗଢ଼ିବା ପାଇଁ ପ୍ରସ୍ତୁତ ହେବି । ଯଦି ଫେରି ନ ପାରେ, ଏହାହିଁ ଶିଶୁର ଚରମ ପରିଚୟ—ସ୍ୱାମୀ ବ୍ରହ୍ମାନନ୍ଦ ।" ଶାଢ଼ୀଟି ଓ ହାରଟି ଦେଖି ଦେଖି ଅପର୍ଣ୍ଣାର ଆଖି ସଜଳ ହୋଇ ଉଠିଲା । ଅତି

Digitized by srujanika@gmail.com

କଷ୍ଟରେ ଗଳା ସଫା କରି କହିଲି, 'ଅନାଥ, ତୋର ବାବୁର ସ୍ମୃତି ଥିଲା ଦୁଇଟି ଅଡ୍ଡି ଏ ସବୁ ଜଞ୍ଜାଳପତ୍ର ମୋଠାରେ ଥାଉ । ତୁ ପିଲା ଲୋକ । କାଳେ କେତେବେଳେ ନଷ୍ଟ କରି ପକାଇବୁ । ଅଡ୍ଡି ତ ଥିଲାରେ ତୋର ଏବେ ପ୍ରୟୋଜନ ନାହିଁ ।"

ଅନାଥ ମୁଣ୍ଡ ହଲାଇ ସମ୍ମତି ଜଣାଇଲା ।

× × × ×

ଠିକ୍ ସାତଦିନ ପରର କଥା । ଦିବାନିଦ୍ରା ବିସର୍ଜନ ଦେଇ ସରୋଜକୁମାର କେତେଗୁଡ଼ାଏ କାଗଜପତ୍ର ନିବିଷ୍ଟ ମନରେ ଦେଖୁଛନ୍ତି । ପତ୍ନୀ ଅପର୍ଣ୍ଣା ଆସି ସୋଫାରେ ବସିପଡ଼ି କହିଲେ, "ବାଃ, କାଲି ରାତି ଦଶଟାଯାଏ ଗାଡ଼ିରେ ଅନିଦ୍ରା; ଅଡ୍ଡି ଭାତଗଣ୍ଡିଏ ଖାଇ ନ ଖାଉଁଣୁ କାଗଜପତ୍ର ନେଇ ବସିଯାଇଛ !"

"କଅଣ କହିବି ଅପର୍ଣ୍ଣା, ବିଶ୍ରାମର ବେଳ କାହିଁ ? ବଡ଼ମ୍ବାରେ ଖୁବ୍ ଅଳ୍ପ ଟଙ୍କାରେ ଗୋଟାଏ ପ୍ରକାଣ୍ଡ ଜଙ୍ଗଲ ଖରିଦ କରୁଛୁ । ତାର କାଗଜପତ୍ର ଗୁରୁ ପାଞ୍ଚ ଦିନ ମଧ୍ୟରେ ପଠାଇବା ଦରକାର । ଆଜି ସନ୍ଧ୍ୟାରେ ସହରରୁ ଓକିଲ ବାବୁ ଆସିବେ । ତାଙ୍କ ପରାମର୍ଶ ଏକାନ୍ତ ଲୋଡ଼ା । ସେଥିପାଇଁ ନିଜେ ସବୁ ଭଲ କରି ଦେଖି ରଖୁଛି । ତାଙ୍କୁ ସବୁ ବୁଝାଇବାକୁ ହେବ ତ ?"

"ଅଚ୍ଛା, କେବଳ ଟଙ୍କା ଟଙ୍କା, ଲାଭ ଲାଭ କରି ଲାଭ କଣ କହିଲ ? ଶରୀରପାତରେ ଏତେ ଯେ ରୋଜଗାର କରୁଛ, ଖାଇବ କିଏ ? ମୁଁ ତ କହିଲି ଅଡ୍ଡି ଥରେ ବିବାହ କର ।"

Digitized by srujanika@gmail.com

"ଅହା, କଥାଟା ବଡ଼ ପୁରୁଣା ହୋଇଯାଇଛି, ଅପର୍ଣ୍ଣା ! ମୁଁ କହୁଛି, ଦ୍ୱିତୀୟଦାର ପରିଗ୍ରହ କରିବା ଭଳି ମୋର ବୟସ ନାହିଁ—ପ୍ରବୃତ୍ତି ମଧ୍ୟ ନାହିଁ ।"

"ତେବେ ଗୋଟିଏ ପୋଷ୍ୟପୁତ୍ର ଗ୍ରହଣ କର, ବଂଶର ନାମଟା ରହୁ ।"

"ଯାହାକୁ ତାହାକୁ ଆଣି ପୋଷ୍ୟପୁତ୍ର କଲେ କଣ ବଂଶର ନାମ ରହିବ ? ରଖି ପାରିବ ସେ ?"

"ପାରିବ । ମୋ ଶ୍ୱଶୁରକୁଳର ଓ ମୋର ପିତୃକୁଳର ରକ୍ତ ଯାହା ଦେହରେ ପ୍ରବାହିତ, ତାହାଦ୍ୱାରା ହିଁ ବଂଶର ନାମ ରହିବା ସମ୍ଭବପର ।"

"କିଏ ସେ ? ଆମ ଜ୍ଞାତିର କେହି ? କିନ୍ତୁ ଜ୍ଞାତିଶତ୍ରୁଠାରୁ ବଡ଼ ଶତ୍ରୁ କେହି ନାହିଁ । ସେହି ରକ୍ତ ତା ଦେହରେ ପ୍ରବାହିତ, ମନେ ରଖିଥିବ । ଯଦି ବିଗିଡ଼ିଯାଏ, ବଡ଼ ଭୀଷଣ ଅବସ୍ଥା ହେବ ଅପର୍ଣ୍ଣା ।"

"ଜ୍ଞାତି ରକ୍ତ ତା ଦେହରେ ନାହିଁ—ତମର ରକ୍ତ ତା ଶିରାରେ ଶିରାରେ ବହୁଛି ।"

ବିସ୍ମିତ ସତ୍ୟେନ୍ଦ୍ରକୁମାର ଚମକି ଉଠି କହିଲେ, "ମୋର ରକ୍ତ ?"

"ହଁ, ତମର । ଜନରବର ସତ୍ୟତାର ପ୍ରମାଣ ସବୁ ମୋହର ହାତରେ"—କହି ଅପର୍ଣ୍ଣା ପାଖ କୋଠରୀକି ଯାଇ ଅନାଥର ବାକ୍‌ସ ଖଣ୍ଡିକ ଦେଇ ବ୍ରହ୍ମାନନ୍ଦ ସ୍ୱାମୀଙ୍କ ଲିଖିତ କାଗଜଖଣ୍ଡିକ

Digitized by srujanika@gmail.com

ତାଙ୍କୁ ଧରାଇଦେଲା । ସରୋଜକୁମାର ପଢ଼ୁଥିବାବେଳେ ତାଙ୍କ ମୁହଁକୁ ଅନାଇ ଅପର୍ଣ୍ଣା ଦେଖୁଥିଲା, କ୍ଷଣେ କ୍ଷଣେ ସ୍ୱାମୀଙ୍କ ମୁହଁରେ ବିଭିନ୍ନ ଭାବର କମ୍ପିତ ଅଭିବ୍ୟକ୍ତି । ଶାଢ଼ୀଟିର ଅଞ୍ଚଳର ଫୁଲ ମଝିରେ ଥିବା ତାରଖଟି ଦେଖାଇ କହିଲା, "ମନେ ପଡ଼େ ଉମାର ବିବାହ ତାରିଖଟା ? ଏହି ଦେଖ ମୋହର ସୂଚି ଲେଖା । ଏହି ତାରିଖଟିକି ମନେ ପଡ଼େ ? କଣ୍ଠକରୁ ଉମାର ନାମ ଲେଖାଇ ଆଣିଥିଲ ତମେ । ତାର ମୃତ୍ୟୁର ଏକମାତ୍ର କାରଣ ତମେ । ଏବେ ପିଲାଟିକୁ ଗ୍ରହଣ କରି ପାପର ପ୍ରାୟଶ୍ଚିତ୍ତ କର ।"

ସରୋଜକୁମାର ଆବେଗଭରା କଣ୍ଠରେ କହିଲେ, "ଏ ସବୁ କାହୁଁ ପାଇଲ ଅପର୍ଣ୍ଣା ?"

"ପିଲାଟି ଏ ସବୁ ନେଇ ଦୁନିଆର ସ୍ରୋତରେ ଭାସି ଭାସି ଆସି ମୋ କୋଳରେ ଲାଗିଛି ।"

"କାହିଁ ସେ ?"

"ଆଗେ ମୋ କଥା ସ୍ୱୀକାର କର, ତାକୁ ପୋଷ୍ୟପୁତ୍ରରୂପେ ଗ୍ରହଣ କରିବ ?"

"ଆଜି ଓକିଲ ବାବୁ ଆସିଲେ ସର୍ବପ୍ରଥମେ ଏହାର ବ୍ୟବସ୍ଥା କରିବି । ଆଜି ଆଉ ସତ୍ୟର ଅପଳାପ କରିବ ନାହିଁ ଅପର୍ଣ୍ଣା ! ଏ ମୋର ପୋଷ୍ୟପୁତ୍ର ନୁହେଁ, ମୋର ଆତ୍ମଜ; କିନ୍ତୁ କାଗଜଟି ଯେପରି ଜୀବନରେ କେବେ ତା ଆଗରେ ଯାଇ ପଡ଼େ ନାହିଁ ।"

"ପୋଷ୍ୟପୁତ୍ର-ଗ୍ରହଣ ଯାଗରେ ଏଟିକୁ ନିଜେ ମୁଁ ଆହୁତି ଦେବି" କହି ଅପର୍ଣ୍ଣା ଚାଲିଗଲା । ସରୋଜକୁମାର ଶାଢ଼ୀ ଧରି କେଉଁ

Digitized by srujanika@gmail.com

ଅତୀତ ରାଜ୍ୟରେ ଭ୍ରମଣ କରୁଥିଲେ । ଅକସ୍ମାତ୍ ତାଙ୍କର ଧ୍ୟାନ ଭାଙ୍ଗିଲା । ଅନାଥର ହାତ ଧରି କହିଲେ, "ଏହିଟି ?"

ଅନାଥ ଯାଇ ଗୋଡ଼ତଳରେ ମୁଣ୍ଡ ଲଗାଇ ପ୍ରଣାମ କଲା ।

ସରୋଜକୁମାର ହାତ ଧରି ପଚାରିଲେ, 'କି ନାମ, ବାବା ?'

ବାଳକ କହିଲା—'ଅନାଥ ।'

ସରୋଜକୁମାର ତାକୁ କୋଳକୁ ଟାଣି ନେଇ କହିଲେ, "ତୁ ଯେ ଆମର ସର୍ବସ୍ୱ, ବାବା । ଛୋଟେ ପିଲାଟି ଦିନୁ ହରାଇ ବସିଥିଲି । ଭଗବାନ ଆଜି ତୋତେ ଫେରାଇ ଦେଲେ । ତୁ ଅନାଥ ନୋହୁ, ଅନାଥବନ୍ଧୁ—ଅନାଥ-ବନ୍ଧୁ ।"

Digitized by srujanika@gmail.com

# ପାଗଳ ନୁହେଁ

## ଶ୍ରୀ ବୈକୁଣ୍ଠନାଥ ଦାସ

**[ ଆଧୁନିକ ଓଡ଼ିଆ ସାହିତ୍ୟରେ କବିତା ଏବଂ କ୍ଷୁଦ୍ର ଗଳ୍ପ କ୍ଷେତ୍ରରେ ଏହି ଲେଖକଙ୍କର କୃତିତ୍ୱ ସୁସ୍ପଷ୍ଟ । ତାଙ୍କର ଜାତୀୟଭାବାପନ୍ନ କେତେକ କବିତା ଉଚ୍ଚ ପ୍ରଶଂସା ଲାଭ କରିଅଛି । ଯଶସ୍ୱୀ ଗଳ୍ପଲେଖକ ରୂପେ ତାଙ୍କର ସୃଷ୍ଟି-ପ୍ରତିଭା ସ୍ୱୀକୃତ । 'ସିଂହଦ୍ୱାର' ତାଙ୍କର ଖଣ୍ଡିଏ ବହୁ ପଠିତ ମନୋଜ୍ଞ ଗଳ୍ପ ପୁସ୍ତକ । ]**

ଏ ଦେଶର ଅନେକଙ୍କ ପରି ସୀମାଦ୍ରିର ବିଶ୍ୱାସ ଯେ, ଚାକିରି ପରେ ତା ଜୀବନରେ ପ୍ରକୃତ ସୁଖର ସନ୍ଧାନ ମିଳିବ । ଦରିଦ୍ର ଘରର କଠୋର ସାଧନାର ମଧୁର ପରିଣତି ଖଣ୍ଡିଏ ଚାକିରି ଜୁଟିଗଲେ ଅସ୍ୱସ୍ତିର ଯେଉଁ ନିଃଶ୍ୱାସ ମାରିବାକୁ ହୁଏ, ସୀମାଦ୍ରି ପ୍ରଥମେ ପ୍ରଥମେ ତାହା ଅନୁଭବ କଲା । ଏତିକିବେଳକେ ପଚିଶ ଟଙ୍କା ଦରମାର ଚାକିରି ପାଇ ନିଜକୁ ଭାଗ୍ୟବାନ ମଣିଲା । ସୁତରାଂ ପାରିଲା ଘରୁ, ଚାକିରି ପାଇଁ ଯେଉଁ ଦିନ ତାକୁ କଟକକୁ ଯିବାକୁ ହେଲା, ତା ମନର ଗତି, ଭାବର ଭଙ୍ଗି ଦେଖି ମନେ ହେଲା, ସେ ଯେପରି ଜୀବନର ଲକ୍ଷ୍ୟ ଦେଶରେ ପହଞ୍ଚିଛି । ବାପମାଙ୍କର ଆଦର ଆଶିଷ ତା ଉପରେ ଅଜାଡ଼ି ହୋଇଗଲା । ଭାଇଭଉଣୀଙ୍କ ସ୍ନେହ ସୋହାଗ ବହୁ ମାତ୍ରାରେ ତାକୁ ପରିପ୍ଳୁତ କଲା । ବନ୍ଧୁବାନ୍ଧବଙ୍କର ଆଦର ଅଭ୍ୟର୍ଥନା ତାକୁ ବାନ୍ଧି ରଖିଲା । ସମସ୍ତଙ୍କ ମନରେ ଏକମାତ୍ର ବିଚାର, ପିଲା ଏଥର ପାରିଲା, ଆମର ଦୁଃଖ ଗଲା ।

Digitized by srujanika@gmail.com

ପ୍ରଥମ ମାସର ପ୍ରଥମ ଦରମା ଯେଉଁ ଦିନ ତାର ହସ୍ତଗତ ହେଲା, ସେ ଦିନ ସେ ବାପାଙ୍କଠାରୁ ଖବର ପାଇଲା ଯେ ନିତାନ୍ତ ତିରିଶ ଟଙ୍କା ନ ପଠାଇଲେ ଘରେ ସଂସାର ରଥ ଅଚଳ ହୋଇ-ପଡ଼ିବ। ବିଚରା ସୀମାଦ୍ରି କରେ କଣ? ଅଗତ୍ୟା ତିରିଶ ଟଙ୍କା ମନି-ଅର୍ଡ଼ର ଯୋଗେ ଘରକୁ ପଠାଇଲା। ପରେ ନିଜେ ଅନୁଭବ କଲା ଯେ, ସେ ତାର କର୍ତ୍ତବ୍ୟ କରିଛି ମାତ୍ର। ଏଣେ ଦଶ ଟଙ୍କାରେ ଯେ ତାକୁ କଟକ ସହରରେ ଚଳିବାକୁ ହେବ ଏ କଥା ମନକୁ ନେଲା ନାହିଁ। ପୁଣି ଛାତ୍ରଜୀବନର ସେହି ପୁରୁଣା ଛିଣ୍ଡା ପରିଧାନଗୁଡ଼ିକୁ ପରିବର୍ତ୍ତନ କରି ନୂଆ କିଛି କରିବାକୁ ଯେଉଁ ଗୁପ୍ତ ଆକାଂକ୍ଷା ହୃଦୟର କେଉଁ ନିଭୃତ କନ୍ଦରରେ ଗୁମୁରି ଉଠୁଥାଏ, ତାକୁ କ୍ଷଣେ କାଳ ପାଇଁ ପାଶୋରି ଦେଲା। ସେହି ମୁହୂର୍ତ୍ତରେ ତାର ତୃଷାର୍ତ୍ତ ଚକ୍ଷୁ ଆଗରେ ଏକ ମ୍ଳାନ ମୁଖର ଅପରୂପ ମାଧୁରୀ ନାଚି ଉଠିଲା। ତାକୁ ସେମିତି ସାହସରେ ମନରୁ ପୋଛି ଦେଲା। ବିପୁଳ କର୍ତ୍ତବ୍ୟ ସମ୍ପାଦନ ବେଳେ ସେହି ନବୋଢ଼ା ବଧୂଟିର କଥା କି ମନକୁ ନେଇ ଅଟଏ? କୁନ୍ଦନପାଇଁ ଦୁଇଗୋଟି କଟକି ଧୋତି, ତିନି ଗ୍ରୁବେଟି ଶିଙ୍ଗ ପାନିଅ, କେଶରଞ୍ଜନ ତେଲର ବୋତଲଟିଏ ପଠାଇବାର ଯେଉଁ ପିପାସା ଜନ୍ମିଥିଲା, ତାହା ଥଣ୍ଡା ହୋଇ ଆସିଲା।

ଦ୍ୱିତୀୟ ମାସର ଦରମା ପାଇବାକୁ ଦୁଇ ଦିନ ମାତ୍ର ଅଛି, ବାପା ଲେଖିଲେ ଯେ ଘରେ ମାଅର ଦେହ ଦୁଖ; ଅନ୍ତତଃ ତିରିଶିଟି ଟଙ୍କା ନ ପଠାଇଲେ ଔଷଧର ବ୍ୟବସ୍ଥା ହେବାର ନୁହେଁ। ବିଚରା ସୀମାଦ୍ରି ପୁଣି କର୍ତ୍ତବ୍ୟର କଠୋର ଡାକ ଶୁଣିଲା। ସହଯୋଗୀ-ମାନଙ୍କଠାରୁ ଧାର ଉଧାର କରି କୌଣସି ମତେ ତିରିଶି ଟଙ୍କା ବାପାଙ୍କ ପାଖକୁ ତାର କଲା। ଏଣେ ଯେ ହୋଟେଲ ବାକି, ତେଣେ

Digitized by srujanika@gmail.com

ଲୁଗା ଦୋକାନର ଦେୟ, ଏ କଥା ଭାବିବାକୁ ତର ସହୁନି ନାହିଁ । ମା ଭଲ ହେଲେ; ଘରେ ସମସ୍ତଙ୍କ ମୁହଁରେ ହସ ଫୁଟିଲା; ସୀମାଦ୍ରି ଅଶ୍ୱସ୍ତ ହେଲା। କିନ୍ତୁ ମଝିରେ ମଝିରେ ଗୃହ-କୋଣ-ଲୀନା କୁନ୍ଦନର ଦାବି ନେଇ ତା ପ୍ରାଣ ଚଞ୍ଚଳ ହୋଇଉଠେ । ତା ପ୍ରତି ତାର ଯେ କର୍ତ୍ତବ୍ୟ ଅଛି, ଏକଥା ଭାବିଲା ବେଳେ ତାର ଶାନ୍ତ ବିମର୍ଷ ମୁଖରେ ଅଶାର ପ୍ରଲେପ ପଡ଼େ ।

ଚୈତ୍ର ମାସର ଦରମା ମିଳିଛି କି ନାହିଁ ବାପାଙ୍କଠାରୁ କାଲୁର ଖବର ଅସେ ଯେ, ଶ୍ରେଷ୍ଠ ତରୁଣୀ ମଞ୍ଜୁଶ୍ରୀ ପାଇଁ ପ୍ରସଙ୍ଗ ଠିକ୍ ହୋଇ ନିର୍ବନ୍ଧ ସରିଛି । ଛଅ ମାସ ପରେ ବାହାଘର ହେବ । ଏଥିଲାଗି ଅଜଠାରୁ ସାବଧାନ ନ ହେଲେ କାମ ଚଳିବ ନାହିଁ । ସୀମାଦ୍ରିକୁ ଅନ୍ତତଃ ଛ’ ଶହ ଟଙ୍କା ଯୋଗାଡ଼ କରିବାକୁ ହେବ । ଅବଶିଷ୍ଟ ଚାରି ଶହ ବାପା ନିଜେ ଯୋଗାଡ଼ କରିବେ ।

ଏଥର ସୀମାଦ୍ରିର ହାଲୁକା ଶୁଖିଗଲା । କଠୋର ଜୀବନର ହାଡ଼ଭଙ୍ଗା ପରିଶ୍ରମ ପରେ ସେ ଏକଥା ଭାବି ତଳେ ବସିପଡ଼ିଲା । ଛ’ ଶହ ଟଙ୍କା—ସେ ଏତେ କାହୁଁ ପାଇବ ? ଏତେ ଟଙ୍କାର ଯୋଗାଡ଼ ନ ହେଲେ ଶ୍ରେଷ୍ଠ ତରୁଣୀଟିର ବାହାଘର ଯେ ବନ୍ଦହୋଇ ଯିବ, ଏଥିପାଇଁ ଦାୟୀ କିଏ ? ସେ ସମସ୍ତଙ୍କର ନିନ୍ଦା ଅବମାନନାର ପାତ୍ର ହେବ, ଏକଥା ଭଲ କରି ବୁଝିପାରିଲା । ବୁକୁର ରକ୍ତ ପାଣି କରି ମାସ ଶେଷରେ ଯେଉଁ ପଇଁଶ ଟଙ୍କା ପାଏ, ସେଥିରେ ଘରର ଦାବୀ ଓ ନିଜର ଚଳାଚଳ ତ ମେଣ୍ଟିବାର ନୁହେଁ; ତାପରେ ବୋଝ ଉପରେ ନଳିତା ବିଡ଼ା ପରି ଛ’ଶହ ଟଙ୍କାର ଅପ୍ରୋଜନ ଯେ ତା ଉପରେ ଲଦା ହେଲା, ସେ କଥା ଚିନ୍ତା କରି ତାକୁ ଦଶ ଦିଗ ଅନ୍ଧାର ଦିଶିଲା । କାହା କାହାର ପରାମର୍ଶ ନେଇ ସେ ଯେତେ

Digitized by srujanika@gmail.com

ବେଳେ ସମବାୟ ସମିତିରୁ ଛ'ଶହ ଟଙ୍କା କରଜ କରି ବାପାଙ୍କୁ ପଠାଇଲା, ସେତେବେଳେ ଜୀବନର ଯେଉଁ ରଙ୍ଗିନ ଛବି ଦେଖୁଥିଲା ତାହା ଧୂସର ପାଲଟି ଗଲା ।

କିନ୍ତୁ ସେ ହତାଶ ହେଲା ନାହିଁ, କାନ୍ଦିଲା ନାହିଁ । ସୈନିକ ସାହସରେ ଜୀବନ ସଂଗ୍ରାମରେ ଝାସ ଦେବାକୁ ଅଣ୍ଟା ଭିଡ଼ି ବାହାରିଲା । ତାର ଏ ଯୁଦ୍ଧଯାତ୍ରା ବେଳେ ଗୋଟିଏ ଶୀର୍ଣ୍ଣ ମୁଖର ସ୍ନିଗ୍ଧ ହସ ଆଖି ଆଗରେ ନାଚିଗଲା । ଭାବିଲା, ଖାଲି କୁନ୍ଦନକୁ ସୁଖୀ କରିବା ପାଇଁ ତାକୁ ଏ ଯୁଦ୍ଧରେ ଜୟୀ ହେବାକୁ ହେବ ।

ଖାଲି ପଚାଶ ଟଙ୍କାରେ ଯେ ତାର ସମସ୍ତ ଅଭାବ ମୋଚନ ହେବ, ଏ କଥା ମିଛ । ସୁତରାଂ ରୋଜଗାରର ଅନ୍ୟ ବାଟ ସେ ଖୋଜିଲା । ଦିନ ସାରା କିରାଣି ଜୀବନର ଖାଟୁଣି ପରେ ସନ୍ଧ୍ୟାବେଳେ ଯେତେବେଳେ ଫୁରସତ ପାଏ, ସେ ଦୁଇଟି ଛାତ୍ରଙ୍କୁ ଟିଉସନ କରି ବସେ । ସେ ତ ଧତେନ ଟିଉସନ କରି ବି. ଏ. ପାଶ କରିଛି । ସୁତରାଂ ଏ କାମ ନୂଆ ବୋଧ ହେଲା ନାହିଁ । ପୁରୁଣା ଟାଇପ୍‌ମେସିନ୍ ଖଣ୍ଡେ କିଣି ରାତିର ସମୟକୁ ରୋଜଗାର ଦିଗରେ ଖଟାଇଲା ।

ସକାଳ ସନ୍ଧ୍ୟାରେ ଟିଉସନ, ଏଗାରଟାରୁ ପାଞ୍ଚଟା ଯାଏ ଅଫିସ, ରାତିରେ ଟାଇପ କାମ, ଏହିପରି ଅବିଶ୍ରାନ୍ତ କାମ କରି ସେ ଜୀବନକୁ କଟାଇବାକୁ ଲାଗିଲା । ତାର ଲକ୍ଷ୍ୟ ଏହି ଭାବରେ ତାର କରଜ ପରିଶୋଧ କରିବ, ଭାଇଭଉଣୀ, ବାପାମା ପରିଶେଷରେ କୁନ୍ଦନ ପ୍ରତି ମଧ୍ୟ ତାର କର୍ତ୍ତବ୍ୟ ପାଳନ କରି ପାରିବ । କିନ୍ତୁ ତାର ଏ ପ୍ରାଣପାତ ପରିଶ୍ରମ ଶରୀର କି ସହ୍ୟ କରିପାରେ ? ସେ ଗୃର ମାସ ପରେ ଅନୁଭବ କଲା, ତା ଦେହରେ ଯୁବକସୁଲଭ ବଳ ବୀର୍ଯ୍ୟ

Digitized by srujanika@gmail.com

ଅନ୍ନ ନାହିଁ । ଦେହର ମାଂସ ସବୁ କୁଆଡ଼େ ଲୁଚି ଯାଇ ଉପରକୁ କେବଳ ହାଡ଼ଗୁଡ଼ିକ ଗଣିହେଉଛି । ଆଖିର ଜ୍ୟୋତି ଯେପରି ନିସ୍ପ୍ରଭ ହୋଇଆସୁଛି । ମୁଣ୍ଡରେ ବେଳେ ବେଳେ ଅସହ୍ୟ ଯନ୍ତ୍ରଣା ଅନୁଭୂତ ହେଉଛି । କିନ୍ତୁ ବୀର ସୈନିକ ସେ, ଯୁଦ୍ଧର ଡାକରାକୁ କି ସେ ଡରିବା ଲୋକ ? ସେ ନିଜକୁ ସାନ୍ତ୍ୱନା ଦେଇ କହେ, ଅଳ୍ପ କିଛି ଦିନ, ତା ପରେ ଶାନ୍ତି । ଏହି ଅବିଶ୍ରାନ୍ତ ଖାଟୁଣୀର ପୁରସ୍କାର ରୂପେ ଜୀବନରେ କି ଶାନ୍ତି ପାଇବି ନାହିଁ ?

କିନ୍ତୁ ଏ ପରିଶ୍ରମର ପୁରସ୍କାର ଏତେ ସାମାନ୍ୟ ଯେ ସେ ତାର କରଜ ସୁଦ୍ଧା ପରିଶୋଧ କରିପାରିଲା ନାହିଁ । ଏଣେ ମାସକୁ ମାସ ବାପାଙ୍କ ଦାବୀ, ନିଜର ଚଳାଚଳ ପାଇଁ ଖର୍ଚ୍ଚ, ଏ ସବୁ ଆଗରେ ତାର ସମୁଦାୟ ରୋଜଗାର ସମୁଦ୍ରକୁ ଶଙ୍ଖେ ପଣା । ସେ ଦିନକୁ ଦିନ ପରିଶ୍ରମର ମାତ୍ରା ବଢ଼ାଇଦେଲା । ଅଫିସର ହାଡ଼ଭଙ୍ଗା ଖାଟୁଣୀ, ବୁଢ଼ି ବୁଢ଼ୀଙ୍କ ଟିଉସନ ଓ ରାତି ଉଜାଗର ରହି ଟାଇପ୍ କାମ ଏ ଅସମ୍ଭବ ପରିଶ୍ରମ ତାକୁ ବିବ୍ରତ କରି ପକାଇଲା । ସେ ନିଜେ ପୂର୍ବ ରୂପର ଏକ ପ୍ରେତ ପରି ଦେଖାଗଲା । ମୁଣ୍ଡର ଯନ୍ତ୍ରଣା ଉତ୍କଟ ହୋଇ ଉଠିଲା । ସେ ଛୁଟି ନେଇ ଗାଁକୁ ଫେରି ଯିବାକୁ ମନ କଲା । କିନ୍ତୁ ଚାକିରି ଚାଲିଯିବା ଭୟରେ ସେ ତାହା କରିପାରିଲା ନାହିଁ । ତେବେ ଜୀବନ ଯୁଦ୍ଧରେ ହଟିବାର ବ୍ୟକ୍ତି ସେ ନୁହେଁ । ନିଦ୍ରାହାର ଛାଡ଼ି କଠୋର କର୍ତ୍ତବ୍ୟ କର୍ମ ଭିତରେ ଆପଣାକୁ ମାଟିରେ ମିଶାଇଦେଲା ।

ତଥାପି ତାହାର ନିସ୍ତାର ହେଲା ନାହିଁ । ସେ କରଜ ପରିଶୋଧ କରିପାରିଲା ନାହିଁ । ସେ ଯାହାକୁ ଦେଖେ ତାକୁ କହେ, "ଭାଇ, କରଜ ଶୁଝିବି କିପରି ?" ଶାରୀରିକ ଦୁର୍ବଳତା ସଙ୍ଗେ ସଙ୍ଗେ ମାନସିକ

Digitized by srujanika@gmail.com

ବିଚାର ଯେଉଁଦିନ ଘଟିଲା, ସେ ଅଫିସ କାମରେ ଅନବରତ ଭୁଲ କରିବାକୁ ଲାଗିଲା । ସେ ଅଫିସ କାମରେ ପୂର୍ବ ପରି ମନ ଦେଇ ପାରିଲା ନାହିଁ । ତାର ଅବହେଳା ପ୍ରତି ସହଯୋଗୀମାନଙ୍କ ଦୃଷ୍ଟି ପଡ଼ିଲା । ମସ୍ତିଷ୍କବିକାର ବୋଲି ଯେଉଁ ଦିନ ସମସ୍ତେ ଧରି ନେଲେ ସେ କଥା ବୋଧହୁଏ ସେ ଜୀବନରେ ଭୁଲି ପାରିବ ନାହିଁ । ଯେଉଁ ଦିନ ପାଗଳ ବୋଲି କର୍ମଚ୍ୟୁତ ହେଲା, ସେ ଦିନ ସେ ସିଧା ସିଧା ହାକିମଙ୍କ ଆଗରେ ଜଣାଇଲା, "ବାବୁ, ମୋର ମସ୍ତିଷ୍କ ଖରାପ ନୁହେଁ, ଏମାନେ ମିଛରେ ମୋ ପଛରେ ଲାଗିଛନ୍ତି । ଏମାନଙ୍କ ଇଚ୍ଛା ଯେ ମୋ ଚାକିରିଟି ଚାଲି ଯାଉ; ବାପମା, ଭାଇଭଉଣୀ, ସ୍ତ୍ରୀ ସବୁ ଲୋକ ଉପାସରେ ମରନ୍ତୁ ।" ତା ଗୁହାରି ହାକିମଙ୍କ କାନରେ ବାଜିଲା ନାହିଁ

ସ୍ନେହ ଭଉଣୀର ବିବାହ ମାସେ ଖଣ୍ଡେ ଅଛି, ସୀମାଦ୍ରି ଯେତେବେଳେ କର୍ମଚ୍ୟୁତ ହୋଇ ପାଗଳା ଅସିଲା, ବାପାଙ୍କ ଆଗରେ କାତର ସ୍ୱରରେ କହିଲା, "ମୁଁ ପାଗଳ ନୁହେଁ । ଏମାନେ ମୋ ନାମରେ ମିଛରେ ଲଗାଇଛନ୍ତି ।" ବାପା ଯୁବକ ପୁତ୍ରର କଙ୍କାଳ ଛବି ଦେଖି ନିର୍ବାକ୍ ହୋଇଗଲେ । ପାଗଳ ସୀମାଦ୍ରିର ଚକ୍ଷୁଦ୍ୱୟରୁ ଜଳ ଗଡ଼ିଗଲା ।'

× × × ×

ସୀମାଦ୍ରିର ସାରା ଛଅ ମାସ ନିଦ୍ରାହାର ନ ଥିଲା । ଅବିଶ୍ରାନ୍ତ ପରିଶ୍ରମ ଜର୍ଜରିତ ହୋଇ ସେ ଜୀବନଟାକୁ ଟାଣି ଓଟାରି ରଖିଛି ମାତ୍ର । ଜଗତରେ ଅକର୍ମଣ୍ୟ ବୋଲି ସେ ତଡ଼ା ଖାଇଛି । ତାର ଚିନ୍ତା କରିବାର ଶକ୍ତି ଯାଇଛି; ସୁତରାଂ ଆଜି ଯେତେବେଳେ ବିଶ୍ରାମ ପାଇଲା ସେ ଗଭୀର ନିଦ୍ରାମଗ୍ନ ହୋଇ ପଡ଼ି ରହିଲା ।

Digitized by srujanika@gmail.com

ଧୀରେ ଧୀରେ କବାଟ ଖୋଲି ଶଯ୍ୟା ପାଖରେ ଠିଆ ହେଲା ଭୁବନ । ପୂର୍ଣ୍ଣ ଛଅ ମାସ ପରେ ସେ ମଥାର ମଣିକୁ ପାଉଛନ୍ତି । ସୀମାନ୍ତ କପୋଳ ଖାଦରେ ଶୋଭ ବଢ଼ୁଛି, କିନ୍ତୁ ଲଲାଟ ଉପରେ ଚିନ୍ତା ରେଖାଗୁଡ଼ିକ ଯେପରି ସ୍ପଷ୍ଟ ଦେଖାଯାଉଛି ।

ଭୁବନର ରୂପରାଜ୍ୟ ସବୁଜ ପତ୍ର ଆଜି ଶ୍ମଶାନର କଙ୍କାଳ ହୋଇ ସବୁକୁ ଘେରୁଛି । ତା ବୁକୁ ତଳର ବୁଭୁକ୍ଷୁ ଯୌବନ ଆଜି ଶବ ସମାଧି ଲାଭ କରୁଛି । ଭୁବନ ଆଖିରୁ ଝର ଝର ଲୁହ ଝରି ଗଲା । ତାର ସ୍ନେହ-ଶୀତଳ କର-ପଲ୍ଲବ ଯେତେବେଳେ ପାଦରେ ବାଜିଲା, ତନ୍ଦ୍ରାଳୁ ସୀମାନ୍ତ ହଠାତ୍ ଉଠି ପଡ଼ି କହୁ ପକାଇଲା, "ସବୁ ହେଲା, କିନ୍ତୁ ତୋ ପାଇଁ କିଛି କଲି ନାହିଁ, ଭୁବନ । ସାଙ୍ଗ କରିବୁ କଣ ? ଏମାନେ ଯେ ମତେ ଛାଡ଼ିଲେ ନାହିଁ । ମୁଁ ପାଗଳ ନୁହେଁ; ଭୁବନ, ମୁଁ ପାଗଳ ନୁହେଁ ।"

ଭୁବନ ଆଖିରୁ ଦ୍ୱିଗୁଣ ଧାରରେ ଲୁହ ବର୍ଷିଗଲା ।

Digitized by srujanika@gmail.com

# ପଦୀ

## ଡକ୍ଟର ଶ୍ରୀ ଗୋପାଳଚନ୍ଦ୍ର ମିଶ୍ର

ପୌଷର ଶୀତ ଓ କୁହୁଡ଼ି ଘେରା ଗୋଟିଏ ନିରବଚ୍ଛିନ୍ନ ନିସ୍ପନ୍ଦ ରାତି । ତମିସ୍ରାର ରଜନୀର ଗର୍ଭକୁ ପ୍ରତିଧ୍ୱନିତ କରି ହୃଦୟର ନିମନ୍ତ୍ରିତ ବାତ୍ସଲ୍ୟର ହାହାକାର ଉଠୁଥିଲା । ଗମ୍ଭୀର କୃଷ୍ଣ ଜଳଭରା ସରସୀ ବୁକୁରେ ଶ୍ୱେତକଇଁର ତନୁ କାନ୍ତିକୁ ଛଳେ ଛଳେ ପ୍ରତିହତ କରି ଚକ୍ରବାଳର ମେଖଳାରୁ ଝରି ପଡୁଥିଲା ଖାଲି କୁହୁଡ଼ି ।

ଅଦୂର ବନ ସଙ୍କୁଳ ଭେଦ କରି ବେଳେ ବେଳେ ଦୁଃଖିନୀର ଛାତିଫଟା ଡାକ ପବନରେ ଭାସିଆସୁଥିଲା । ତାର ମୁହଁର କରୁଣ ବିଳାପ ଯେପରି ପ୍ରତି ମୁହୂର୍ତ୍ତରେ ମୋର ମନୁଷ୍ୟତାକୁ ଅହ୍ୱାନ କରୁଥିଲା; ମୋର ସମସ୍ତ ମାନବିକତା ଉପରେ ଅପମାନ ଢାଳି ଦେଉଥିଲା । ତା ସୁନ୍ଦର ଅଙ୍ଗରୁ ଲକ୍ଷ ଝର ନିର୍ମଳ ମଣିଷ ଅଙ୍ଗରୁ କାଢ଼ି ଆଣୁଥିଲା ଅଦମ୍ୟ ଏବଂ ଅନିବାର୍ଯ୍ୟ ଉଷ୍ଣ ଶୋଣିତ, ଯେଉଁ ଶୋଣିତ ଯୁଗେ ଯୁଗେ ଉତର ମଣିଷର ଅନ୍ତର ଅତ୍ମାକୁ ବିଦୀର୍ଣ୍ଣ କରି ପକାଇ ଅଛି; ଯେଉଁ ଶୋଣିତ, ବିଦ୍ଧ ବିହଙ୍ଗର ଅସୀମ ବେଦନା ଅଭିବ୍ୟକ୍ତରେ ଜାହ୍ନବୀ ତୀରବାସୀ ଶ୍ୟାମ-ତପୋବନପ୍ରାଣ ବାଲ୍ମୀକିଙ୍କ ଚିତ୍ତକୁ କବିତା ରସରେ ଭସାଇ ଦେଇଥିଲା । ଅଜି ଗୋଟିଏ ଜନ୍ତୁର ଶୋଣିତ କେବଳ ସୃଷ୍ଟିର ନିତ୍ୟ-ଶିବ-ସନାତନ-ଛନ୍ଦ ମଧ୍ୟରେ ଗୋଟିଏ ସୃଷ୍ଟି ଇଙ୍ଗିତ ମାତ୍ର ।

Digitized by srujanika@gmail.com

ମୁଁ ଭାବୁଥିଲି ତାଳେ ପଦ୍ମା ଟିକିଏ ନୀରବ ହୋଇଯିବ । ପଶୁ-ଜନ୍ତୁ ହୁଏତ ଟିକିଏ ମୁହୂର୍ତ୍ତର ସଙ୍କଟରେ ଏବଂ ବସ୍ତୁର ଗହଳରେ ଅନ୍ତତଃ ଦୁଃଖଟା ଭୁଲି ଯାଇ ପାରେ । ମାତ୍ର ସାନ ପୁଅ ଲିଲି ପାଇଁ ଦୁଧ ଗରମ୍ କରୁ କରୁ ଅରତୀ କହୁଥିଲା, ପଦ୍ମା କେବେହେଲେ ତୁନୀ ହେବ ନାହିଁ; ଯେତେହେଲେ ମାଅର ମନ, ଛାତି ତାର ଫାଟି ଯାଉଥିବ ।

ମୁଁ କହିଲି, "ନାଇଁ ଅରତୀ, ପଦ୍ମାକୁ ଦୁଧଭାତ ପୁଞ୍ଜିଏ ଦିଅ, ତାଳେ ସେ ଭୁଲିଯାଇ ପାରେ ।" ବାହାରେ ଖୁବ୍ ଥଣ୍ଡା ପବନ; ବାତାୟନ ପଥ ଦେଇ ଦଶମୀର ଚନ୍ଦ୍ରଧାର କକ୍ଷ ଭିତରକୁ ପଶି ଆସୁଥିଲା । ଅରତୀ ମୋ ଉପରେ ଖୁବ୍ ବିରକ୍ତ ହୋଇ କହିଲା, "ନାଇଁ, ତୁମେ କିଛି ଜାଣିନ । ପଶୁ-ଜନ୍ତୁ ବୋଲି ସେ କଅଣ ସୃଷ୍ଟିର ଧାରାରୁ ବଞ୍ଚିଲ ? ତୁମେ ତ ପୁରୁଷ ଲୋକ ।" ଯୁଗେ ଯୁଗେ ନାରୀର ଦାନରେ ବାତ୍ସଲ୍ୟ, ଅପତ୍ୟ ସ୍ନେହ, ମାତୃତ୍ୱ ବିକଶିତ ହୋଇ ଆସିଅଛି । ଆଜି ଅରତୀ ଆଜି ତାହାହିଁ ପ୍ରତିପାଦନ କରୁଛି ।

ମୁଁ ଉତ୍ତର ଦେଲି, "ବାତ୍ସଲ୍ୟ କଅଣ ନାରୀଜାତିର ଏକାଏକ ଅଧିକାର ?" ଅରତୀର ଲୋଳନେତ୍ରର ଲୀଳାୟିତ ଗତିରୁ ବୁଝି ପାରିଲି ତାର ପୁରୁଷ ପ୍ରତି ବିଶେଷରେ ସ୍ରଷ୍ଟାର ଦୟା-ଶୂନ୍ୟତା ପ୍ରତି ବହୁତ ଅଭିଯୋଗ ଅଛି । ଲିଲି ଖୁବ୍ ଜିଦ୍ ଧରି ବସିଲା, ସେ ଅଦୌ ଦୁଧ କି ଭାତ ଖାଇବ ନାହିଁ ।

ପୌଷର ଦୀର୍ଘ ରାତି; ନିବିଡ଼ ଶୀତ । ଏଥିରେ ପୁଣି ଲିଲି ପରି କୋମଳ ଶିଶୁ ଉପବାସ ଶୋଇବ । ଅରତୀ ବାପଧନ କହି ବହୁତ ଆଦର କଲା ।

ଅରତୀ ଲିଲିକୁ କେତେ ଲୋଭ ଦେଖାଇଲା । ସେ କୁଆଡ଼େ ଲିଲି ପାଇଁ ସାଇକେଲ୍, ଘଣ୍ଟା ଆଉ ଗୋଟିଏ ଉଡ଼ାଜାହାଜ କିଣି

Digitized by srujanika@gmail.com

ଅଣିଦେବ । ଲିଲିର କିନ୍ତୁ ସେଇ ଏକ ଜିଦ୍, ସେ ଖାଇବ ନାହିଁ—ସେ ସେମିତି ଶୋଇବ; କାରଣ ତାର ପଦ୍ମା ଅଶ୍ରୁପାତ କରୁଛି—ତାର ଆଦରର ପକ୍ଷୀ ଅଜସ୍ର କନ୍ଦନରେ ଘର ଯାଇଁ ଦେଉଛି । ଅରତୀ ପ୍ରାଣରେ ଯେଉଁ ଉତ୍ସୁକତା, ଯେଉଁ ଆବେଗ ଘନୀଭୂତ ହୋଇ ଉଠିଛି, ଯେଉଁ ସ୍ୱର୍ଗୀୟ ସ୍ନେହ ସମ୍ଭାର ଓ ମମତା ଫୁଟି ଉଠିଛି, ଠିକ୍ ସେହି ଉତ୍ସୁକତା, ସେହି ମମତା, ସେହି ସ୍ନେହ, ସେହି ଲୋଭ ଯେ ଗୋଟିଏ ବିହଙ୍ଗର ଅନ୍ତରକୁ ପ୍ରତି ମୁହୂର୍ତ୍ତରେ ପ୍ରକାଶିତ କରୁଅଛି, ମୁଁ ଏହା ଲକ୍ଷ୍ୟ କରୁଥିଲି । ଲିଲି ବିସ୍କୁଟ ଫିଙ୍ଗିଦେଲା । ଲଣ୍ଠନକୁ ଗୋଡ଼ରେ ଠେଲିଦେଲା । ଅରତୀର ଶାଢ଼ୀଟାକୁ ଚିରି ଦେଲା । ଉକୁଣୀ ସାବିତୀର ଦର୍ପଣଟାକୁ ଭାଙ୍ଗିଦେଲା ଏବଂ ଏପରି ଅନ୍ୟ କେତେ ଉତ୍ପାତ କରିଦେଲା । ଆଜି କେତେ ଏପରି ଚଳାଇଥାନ୍ତା, ମାତ୍ର ମୁଁ ଏ ଘରେ ଥାଇ କଡ଼ାକଣ୍ଠରେ ଲିଲିକୁ ସାବଧାନ କରିଦେଲି । ଅରତୀର ଦୁଃଖ ନୁହେଁ ତ, ତାର ଅନ୍ତର ତଳେ ପ୍ରବାହିତ ବିଷ୍ଣୁ-ବାତ୍ସଲ୍ୟ ଫଲ୍ଗୁର ପ୍ରବାହ, ନାରୀ ଅରତୀର ସଞ୍ଚିତ ଦେବତ୍ୱ ସୁରଭିପୂର୍ଣ୍ଣ ସ୍ନେହ-ବାତ୍ସଲ୍ୟର ଚମକ । ଲିଲି ଦୁଧ ପିଇବ ଏବଂ ଶୋଇବ—ତାର କିପରି ଗୋଟାଏ ଦୁଃଖ, ତା ପଦ୍ମାର କନ୍ଦନ ବନ୍ଦ ହେବ । ପଦ୍ମା ବିହଙ୍ଗ, ଅରତୀ, ଲିଲି ଅଦକ୍ଷ ଅଭିନୟ ଭୂମିକାରେ ରହି ଏମାନଙ୍କୁ ଭେଦ୍ କରି ଯେଉଁ ବିସ୍ମୟକର ଅଙ୍କ ମୋର କ୍ଷୁଦ୍ର କୁଟୀରରେ ରୂପାୟିତ ହେଉଅଛି, ତାହା ଦୁନିଆଁରେ ଦୁର୍ଲ୍ଲଭ ଯେତିକି, ସୁନ୍ଦର ସେତିକି । ଆକାଶରେ ତୁଷାର ଧବଳ ଓ ଚଞ୍ଚଳ ମେଘ ଖଣ୍ଡ ଭାସି ଭାସି ଯାଉଛି ଏବଂ କେତେବେଳେ କିମିତି ଚନ୍ଦ୍ରକୁ ଘୋଡ଼ାଇ ରଖୁଛି । ଗୃହର ଦୃଶ୍ୟ ଫେରି ଆସିଲା ।

ଅରତୀ ପଚାରିଲା, "ଦୃଷ୍ଟି, ତୁମ ମିଳିଲା ?" ପ୍ରସନ୍ନ ଏତେବେଳକୁ ନିତାନ୍ତ ଅପ୍ରତିଭ, ଅଭିଭୂତ, ନିର୍ବାକ ଓ ଅବସନ୍ନ ହୋଇ ପଡ଼ିଥାଏ ।



Digitized by srujanika@gmail.com

ଶୁଭ ଦେହରେ ଦେଖି ନିଦ୍ରା ଚାରେ କୁସ-କୁଅଁ ଖୋଷି ଉଦ୍ଧୃତ ଦେବ ଦିଅ ଦୋଳଥାଏ । କୃଷ୍ଣ ଗୃହର ଉପରେ ପ୍ରସନ୍ନ ହୁଏ ହିତ । ସେ କହେ, ଅମେ ନା ଥିଲେ, ତାଙ୍କୁ ଶାସନ କେ ଦେଇଥାନ୍ତା ।

ପଦେଲ ଭାବୁଥିଲି, କୃଷ୍ଣ ଭାଇଙ୍କ ପଦା ବିରାଡ଼ି କୁଅଙ୍କର ଅଦ୍ଭୁତ କଥା ଅମ ଅଦେରୋ ଶୁଣେଇଲି । ମୁଁ କୃଷ୍ଣଙ୍କୁ ପଚାରିଲି, "କୃଷ୍ଣ, ତମେ ଜେଜେ ସାହି, କଣ୍ଠେଇ, ହାଟସାହି, ପୋଖରୀସାହି ସବୁ ବୁଲି ଦେଖିଛ?" କୃଷ୍ଣ ଉତ୍ତର ଦେଲ, "ପ୍ରତ୍ୟେକ ସାହିରେ ପ୍ରତ୍ୟେକ ଘରେ ଖୋଜିଲି । ହଁ, ସମସ୍ତେ ଶୋଇଲେଣି । ଯାହାକୁ ଡାକି ପଚାରିଲି ସେ କହିଲା ଦେଖିଲେ ତାଙ୍କ ଠା ବିରାଡ଼ି କୁଅ ବୋବେଇ ବୋବେଇ ବୁଲୁଥିଲେ ।"

ପୋ ବିରାଡ଼ି ଘର, ଗୃହ, କାନ୍ଥ ସବୁ ଖୋଜି ବୁଲୁଥାଏ; ବୃଷ୍ଟି ଦରଜାରେ ଯାଇ କେତେ ଡେଉଁଥାଏ । ଘର ଭିତରେ କେଉଁଟି କେ ଦେଲେ ଧାଇଁ ଯାଉଥାଏ ।

ପ୍ରଥମେ ଅମ ଘରେ ବିରାଡ଼ି ନଥିଲା । ସାଇପଡ଼ିଶାରେ ସମସ୍ତଙ୍କ ଘରେ ବିରାଡ଼ି ଥାଆନ୍ତି । ସେମାନଙ୍କର ବିରାଡ଼ି ସବୁ ଅମ ଘରେ ଅସି ଉଠେଇଦେଲେ ପଶନ୍ତି ।

ବିରାଡ଼ି ପୋଷିବାକୁ ଅବସ୍ଥା ଖୁବ୍ ଭଲ ପାଏ । ସାହିପଡ଼ିଶାର ବିରାଡ଼ି ଅସିଲେ ସେ କେବେ ତଡ଼ିଦିଏ ନାହିଁ, ବରଂ ଦୁଧ ଭାତ, ମାଛ, କେବେ କମିତ ଦିଏ । ପରଘର ବିରାଡ଼ି ଅସି ଘରେ ପଶି ଶିକା ବଡ଼ାରୁ କଛି ଅଜାଣତରେ ଖାଇଯାନ୍ତି । ତଥାପି ଅବସ୍ଥା ଅଦୌ ବିରକ୍ତ ହୁଏ ନାହିଁ । ତାର ଇଚ୍ଛା ହୁଏ ଗୋଟିଏ ବିରାଡ଼ି

Digitized by srujanika@gmail.com

ବାନ୍ଧି ରଖି ପକାନ୍ତା । ମାତ୍ର ଗୁରୁଙ୍କର କୃଷ୍ଣ କହନ୍ତି, "ଯାହାର ବିରାଡ଼ି ବାନ୍ଧି ରଖିବ ସେ ବାରକଥା କହିପାରେ ।"

ଅବଶ୍ୟ ପଶୁ ପକ୍ଷୀ ପାଳନର ପକ୍ଷପାତୀ, ବିଶେଷରେ ଗୋଟିଏ ବିରାଡ଼ି ଆଣି ପୋଷିବାକୁ ତାର ପ୍ରବଳ ଇଚ୍ଛା ଥାଏ । ଘରେ ମୂଷା ବହୁତ, ଧାନ ଚାଉଳ ରଖି ହେଉନାହାନ୍ତି । ମାତ୍ର ବଡ଼ ପୁଅ ପ୍ରସନ୍ନ ଏକଦମ୍ ବିରାଡ଼ି ବିରୋଧୀ । ବିରାଡ଼ିର ସ୍ପର୍ଶ ପଡ଼ିଲେ ତାର ନାହିଁଡ଼ିଏ । ସେ ବିରାଡ଼ି ଦେଖିଲେ ଖାଇବସିବାଠାରୁ ଉଠିଯାଏ ଓ ଯଦି ରାତିରେ ଶୋଇବା ଘରେ ବିରାଡ଼ିଟା ପଶିଯାଏ, ତା'ହେଲେ ସାରା ରାତି ସେ ସେମିତି ଜଗାଘରେ ବସି ରହିବ । ପ୍ରସନ୍ନର ଭଉଣୀ ମାଧବୀ, ସେ ମଧ୍ୟ ବିରାଡ଼ିକୁ ଘୃଣା କରେ ।

ଆଜି ମୁଁ ମଧ୍ୟ ଠିକ୍ ମୋ ପୁଅଝିଅମାନଙ୍କ ପରି ବିରାଡ଼ିକୁ ପାଖରେ ପୂରାଇ ଦଏନାହିଁ ।

ଲଲ୍ କିନ୍ତୁ ଛୋଟ ପିଲା । ବିରାଡ଼ି ସହିତ ଖେଳିବା, ବିରାଡ଼ି ବେକରେ ଘଣ୍ଟି ବାନ୍ଧିବା, ଅଭିନୟ ଦେଖାଇବା ଯେପରି ତାର ସରଳ ତରଳ ଜୀବନର ଗୋଟିଏ ଗୋଟିଏ ଅଭିଯାନ । ତେଣୁ ପରଘର ବିରାଡ଼ିକୁ ବାନ୍ଧି ତାଙ୍କୁ ଶତ ପରୀକ୍ଷା ମଧ୍ୟରେ ଶାନ୍ତି ଦେବାଠାରୁ ତାର ବେକରେ ଫୁଲମାଳ, କାଇଁଚମାଳ ଲମ୍ବାଇ ମଜା ଦେଖିବା ପର୍ଯ୍ୟନ୍ତ କିମ୍ବା କେତେବେଳେ ଲାଙ୍ଗୁଳରେ ଜଳନ୍ତା ବଳିତା ବାନ୍ଧି ନୂତନ ଅବସ୍ଥାର ଦେଖାଇବାଠାରୁ ତାକୁ ଚୁଅ ଚିଅ କରିବା ପର୍ଯ୍ୟନ୍ତ ସମସ୍ତ ପ୍ରକାର କଳାରେ ଯେପରି ଲଲ୍ କୌଶଳ ପୂର୍ଣ୍ଣ ପ୍ରବେଶ ହାସଲ କରିଥିଲା ।

ପରିବାର ମଧ୍ୟରେ ଅବଶ୍ୟ ଆଜି ଲଲର ଏହି ପ୍ରକାର ଆସକ୍ତି ଏବଂ ଅନ୍ୟମାନଙ୍କର ବିରକ୍ତି ଏହି ଦୁଇଟାଯାକ ଉପାଦାନ

Digitized by srujanika@gmail.com

ଯେପରି ଉଭୟେ ଉଭୟଙ୍କୁ ସାବ୍ୟସ୍ତ କରି ପାରିବାରିକ ଜୀବନରେ ଗୋଟିଏ ସମସ୍ୟା ହୋଇଯାଏ । ଆଜି ଗୃହର କୁକୁର କଥା କାହିଁକି କହିବ । କେତେବେଳେ ଅବଶ୍ୟ ଯଦି ବିପଦ ପଡ଼େ, ଏଇ ବିରାଡ଼ିଟାକୁ ବାନ୍ଧି ରଖ, ତେବେ ସେ ତାହା ଅକୁଣ୍ଠିତ ଚିତ୍ତରେ କରେ । ଯଦି କେତେବେଳେ ମୁଁ ଆଦେଶ ଦେଇଥିବି, ଏହି ବିରାଡ଼ି ବାହାର କରିଦେଲେ ମୁଁ ଶୋଇବି, ତେବେ ସେ ତାର ସିନ୍ଦୁର ବୋଳା ଠେଙ୍ଗା କାଢ଼ି ବିରାଡ଼ି ପଛରେ ଗୋଡ଼ାଏ ।

ଲଲ୍ଲୁ ବିରୁଦ୍ଧରେ ପ୍ରତିଦିନ ସାହିପଡ଼ିଶା ପିଲାମାନଙ୍କର ଅଭି-ଯୋଗ ହୁଏ — ସେ କୁଆଡ଼େ ତାହା ବିରାଡ଼ିକୁ ଦୀର୍ଘ ଗୃହ ଘଣ୍ଟା ପାଇଁ ବାନ୍ଧି ରଖିଥିଲା । ତାହା ବିରାଡ଼ିର ନାକରେ ଯଦି କଳା ବୋଳା ହୋଇଥିବ ବା ତାରା ମୁଣ୍ଡରେ ସିନ୍ଦୁର ବୋଳା ଯାଇଥିବ ତେବେ ମୁଦେଇମାନେ ପ୍ରଥମେ ଲଲ୍ଲୁ ମହାପାତ୍ରଙ୍କୁ ମୁଦାଲ କରିବେ । ତଥାପି ଲଲ୍ଲୁ ମହାପାତ୍ର ଯଦି ତାର ଅଜା କେଉଁଦିନ ଆସିଥିବେ, କା ଘରକୁ ଝିଅ କିଏ ଆଣିଥିବେ ତେବେ ସେ ଶତଜିହ୍ୱା ହୋଇ ତାର କାଞ୍ଚିଅ, ମାଣିକ, ଚମ୍ପା, ଟମି, ବୁଲି, ଟେମି ପ୍ରଭୃତି ବିରାଡ଼ିମାନଙ୍କର ପ୍ରଶଂସା ଗାଇବସେ । କେଉଁ ବିରାଡ଼ିଟି ଆଦେଶ ମାନେ, କେଉଁ ବିରାଡ଼ି ବାଘ ପରି ଧାଇଁ ଆସେ, କେଉଁ ବିରାଡ଼ି ପ୍ରତ୍ୟୁତ୍ତର ଦିଏ — ସେ ପ୍ରତି ବିଷୟ କହିବସେ । ସୃଷ୍ଟିରେ ବିରାଡ଼ିପରି ଜନ୍ତୁ ପାଇଁ ସୃଷ୍ଟିହୋଇଥିବା ପ୍ରାଣୀ ଲଲ୍ଲୁର ଶିଶୁ ହୃଦୟର ପ୍ରତିଫଳନ ଯେପରି ନିତାନ୍ତ ନୈସର୍ଗିକ ।

ତେବେ ପ୍ରସନ୍ନ ଆଜି ସାବିତ୍ରୀ ଭାଇଭଉଣୀ ତୁହେଁ ଲଲ୍ଲୁକୁ 'ବିରାଡ଼ି' ବୋଲି କହି ଚମକାଇ ଦେଉଥିଲେ । ମାତ୍ର ଲଲ୍ଲୁ ତାହା କଥା ଶୁଣେ ନାହିଁ ।

× × ×

Digitized by srujanika@gmail.com

ଆଶ୍ଚର୍ଯ୍ୟର ଘଟଣା, ଦିନେ ସକାଳେ ସମସ୍ତେ ପ୍ରତ୍ୟୂଷରୁ ନିଦରୁ ଉଠି ଦେଖୁଁ, ଆମ ଅଗଣାରେ ଗୋଟିଏ ବିରାଡ଼ି ଛନୋଟି ଛୁଆ ଧରି ଖେଳୁଛି; ଲିଲି ସେମାନଙ୍କ ପରିଚର୍ଯ୍ୟାରେ ବ୍ୟସ୍ତ। ଶୀତ ଦିନର ନମ୍ର ସକାଳର ଧୂସର ରେଖା ଲିଭି ନ ଥାଏ। ସମସ୍ତେ ଭାବିଲୁ, ଏ ବିରାଡ଼ି କେଉଁଠୁ ଆସିଲା? ଆମ ଗାଁର କାହାର ସେ ବିରାଡ଼ି ନୁହେଁ।

ଦୁଇ ତିନି ଦିନ ଗଲା। ସେ ବିରାଡ଼ି ଛୁଆଙ୍କୁ ଧରି ଆମ ଘରେ ରହିଲା। ପ୍ରସନ୍ନର ଘନ ଘନ ତାଗିଦା ହେଲା, "ବିରାଡ଼ିକୁ ଘରୁ ତଡ଼ି ଦିଆଯିବ।"

ବିରକ୍ତି, ନାସିକାକୁଞ୍ଚନ, ଛିକ୍ ଛିକ୍ ଓ ମାର୍ ମାର୍ ମଧ୍ୟରେ କେବଳ ଅରୁଣାର ପ୍ରଶ୍ରୟ ଏବଂ ଲିଲିର ଆସକ୍ତି ହିଁ ସେହି ବିରାଡ଼ି ଓ ତା ଛୁଆଙ୍କୁ ଆମ ଘରେ ରହିବା ପାଇଁ ସାହାଯ୍ୟ କଲା।

କ୍ରମେ ବିରାଡ଼ି ଛୁଆଗୁଡ଼ାକ ଏ ଘରେ ସେ ଘରେ ପଶିଲେ, ଭାତରେ ପାଣିରେ ମୁହଁ ମାରିଲେ, ଘର ବାଡ଼ ଅପନା କଲେ। ପ୍ରତିଦିନ ପ୍ରସନ୍ନ ଅଧା ଭାତ ଖାଉଥିବ ବିରାଡ଼ି ଛୁଆଗୁଡ଼ାକ ଆସିବେ; ପ୍ରସନ୍ନ ଉଠିଯିବ। ଏହାପରେ ସେମାନଙ୍କର ଦୌରାତ୍ମ୍ୟ ପ୍ରାୟ ବଢ଼ିବାକୁ ଲାଗିଲା।

ଅନେକବାର ପ୍ରସନ୍ନ ଓ ସାବିତ୍ରୀ ବିରାଡ଼ି ଛୁଆଗୁଡ଼ାକୁ ଲୁଅରେ ନେଇ ଛାଡ଼ିଦେବା ପାଇଁ ଧୂମ୍ ଲଗେଇଥିବେ। ପରମୁହୂର୍ତ୍ତରେ ଅରୁଣା ପୁଣି ଅବସ୍ଥା ସମ୍ଭାଳି ନେବ।

ତେବେ ଏକ ଦିନର କଥା—ପ୍ରସନ୍ନ ନିଦରେ ଚିତ୍କାର କରି ଉଠିଲା ଏବଂ ସେ ଦେଖିଲା ତାର ଶେଯ ଗୃହ ପାଖରେ ବିରାଡ଼ି ଛୁଆଗୁଡ଼ାକ।

Digitized by srujanika@gmail.com

ଅରତି ବଡ଼ ପୁଅର ଏପରି ଅସୁଖରେ ଓ ମୁହୂର୍ତ୍ତିର ରାଗରେ ଚାକର କୃଷ୍ଣକୁ ଆଦେଶ ଦେଲା, "କୃଷ୍ଣ, ବରାଡ଼ ଛୁଆଗୁଡ଼ାଙ୍କୁ କୁଆଡ଼େ ଛାଡ଼ିଦେଇ ଆସିଲୁ ।" କୃଷ୍ଣର ଧାରଣା ଛୁଆଗୁଡ଼ାକ ରହିଗଲେ ବରାଡ଼ ଚାଲିଯିବ । ଲିଲି ଭାରି କାନ୍ଦିଲା ।

ବରାଡ଼ ଚାରିଆଡ଼େ ବୁଲୁଥାଏ ଏବଂ କେତେବେଳେ କେମିତି ଛୁଆମାନଙ୍କୁ ଟିକିଏ ଦେଖି ବୁହାଏ ଚାଟି ପକାଏ ।

× × × ×

ପ୍ରାୟ ଛ ଘଣ୍ଟା ବିତିଗଲା, ଦ୍ୱିପ୍ରହର ହେଲା, ସଞ୍ଜ ହେଲା, ରାତି ଘଡ଼ିଏ ହେଲା, ବରାଡ଼ ସେମିତି ବୁଲୁଥାଏ । ପ୍ରାୟ ଅଧ ରାତିରେ ଟିକିଏ ବୋବେଇଲା । ତହିଁ ଆରଦିନ ସକାଳେ ପ୍ରସନ୍ନ, ଅରତି, ସାବନୀ, କୃଷ୍ଣ ସମସ୍ତେ ଭାବୁଥାନ୍ତି ଛୁଆଗୁଡ଼ିକୁ ଖୋଜି ଖୋଜି ନ ପାଇ ବରାଡ଼ ଘରଛାଡ଼ି ଚାଲିଯିବ ।

ମୁଁ ସ୍କୁଲରୁ ଫେରିଲି । କ୍ରମେ ପୌଷ ମାସର ଧୂପ୍-ଛାୟା ଖେଳିଗଲା । ସଞ୍ଜ ପହରେ । ବରାଡ଼ର ଯେଉଁ ଆଜି ଚିତ୍କାର, ଯେଉଁ ହୃଦୟବିଦାରକ ବିଳାପ । କୃଷ୍ଣ ତାକୁ ତଡ଼ି ଦେଉଥାଏ, ସେ କିନ୍ତୁ ଘର ଛାଡ଼ି ଚାଲି ଯାଉ ନ ଥାଏ । ସେ କାନ୍ଥକୁ ଚାଳକୁ ଚାହିଁ ବୋବେଇଲା, ଗଛ ଉପରକୁ ଚାହିଁ ବୋବେଇଲା, ମଣିଷ ମୁହଁକୁ ଚାହିଁ ବୋବେଇଲା । ଅରତିର ପାଦରେ ଘଷି ହେଲା । ଲିଲିକୁ କାମୁଡ଼ି ଗୋଡ଼ାଇଲା । ମୋ ମୁହଁକୁ ଚାହିଁ ବୋବେଇଲା । ଧୂଳିରେ ଗଡ଼ିଲା । ଅଗଣା ଶାଗ କିଆରିରେ ଲେଟିଲା । ମୋର ମନେ ପଡ଼ିଲା ଅତୀତର ସେ ବିସ୍ମୃତ ଗର୍ଭରେ ଯଶୋଦାଙ୍କର ପ୍ରାଣର ଯେଉଁ ଆବେଗଭରା କ୍ରନ୍ଦନ ଯମୁନା କୂଳର ତରୁଲତା, ଧୂଳିମାଟି, ଶୈଳ

Digitized by srujanika@gmail.com

ଶିଳାକୁ ଅଭିଭୂତ କରି ଦେଇଥିଲା । ଏହିଭଳି କଣ୍ୱ ମୁନିଙ୍କ ବାତ୍ସଲ୍ୟ ଧନେ ମୁନି-ତପୋବନ-ପ୍ରତିପାଳିତା ଶକୁନ୍ତଳାର ବିଦାୟ ପଥରେ ବିଷାଦ-ପ୍ରଦୀପ ଜାଳି ଦେଇଥିଲା । ସେହି ପୁରାତନ କ୍ରନ୍ଦନର ପ୍ରତିଧ୍ୱନି ଯେପରି ପଦ୍ମା ବିହଙ୍ଗର ବୁକୁରେ ବାଜୁଛି ।

ତାର ଆଖିରେ ଅନୁଯୋଗଭରା ମିନତି । ତାର ପ୍ରାଣରେ ସନ୍ତାନ ପାଇଁ ବର୍ଦ୍ଧିତ ବ୍ୟାକୁଳତା, ଯେଉଁ ବ୍ୟାକୁଳତା ସୃଷ୍ଟିକୁ ସୃଷ୍ଟି କରି ରଖିଅଛି; ଦୁଃଖ ଦୁର୍ବିପାକ, ଝଡ଼ ବତାସ, ଜନ୍ମ ଓ ମୃତ୍ୟୁ ମଧ୍ୟରେ ଅମୃତ ଢଳାଉଛି । ଠିକ୍ ସେହି ସ୍ପନ୍ଦିତ ବ୍ୟାକୁଳତା ।

ସେହି ଶୀତ ରାତିରେ ଅରତୀ କୃଷ୍ଣକୁ ପଠାଇଲେ ତାର ଛୁଆକୁ ଖୋଜିଆଣି ବିହଙ୍ଗ ପାଖରେ ଛାଡ଼ି ଦେବା ପାଇଁ; ମାତ୍ର ସେ ସେହି ନିର୍ବାସିତ ଛୁଅଗୁଡ଼ିକର ସନ୍ଧାନ ପାଇଲା ନାହିଁ ।

ଅରତୀ ଖୁବ୍ ବିରକ୍ତ ଏବଂ ବ୍ୟଥିତ । ସେ ଛଅଟି ସନ୍ତାନର ଜନନୀ । ସେ ଜାଣେ ସନ୍ତାନ ପାଇଁ ମାତାର ଅସରନ୍ତ ଆବେଗ ।

ଯେଉଁ ଅମୃତ ମାତୃତ୍ୱ ସୃଷ୍ଟିକୁ ଆଶୀର୍ବାଦରେ ବୁଡ଼ାଇ ରଖିଛି, ସେହି ମାତୃତ୍ୱର ବାତ୍ସଲ୍ୟଭରା ଆବେଗ, ଅତି ସାମାନ୍ୟ ବିହଙ୍ଗର କ୍ରନ୍ଦନରେ ସୃଷ୍ଟି ହୋଇ ସତୀଶ ମନକୁ ମଥି ଦେଉଅଛି ।

Digitized by srujanika@gmail.com

# ସଭ୍ୟ ଜମିଦାର

## ଲେଖକ—ବ୍ୟାସକବି ଫକୀରମୋହନ ସେନାପତି

[ ଏ ଗଳ୍ପର ରଚୟିତା ବ୍ୟାସକବି ଫକୀରମୋହନ ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ ମଲ୍ଲିକାଶପୁର ଗ୍ରାମରେ ୧୮୪୩ ଖ୍ରୀଷ୍ଟାବ୍ଦ ଜାନୁୟାରୀ ମାସରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ପିତାଙ୍କର ନାମ ଲକ୍ଷ୍ମଣ ସେନାପତି ଓ ମାତାଙ୍କର ନାମ ତୁଳସୀ ଦେବୀ । ବାଲ୍ୟାବସ୍ଥାରେ ଫକୀରମୋହନ ତତ୍କାଳୀନ ପ୍ରଚଳିତ ପଦ୍ଧତି ଅନୁଯାୟୀ ଶିକ୍ଷାଲାଭ କରିଥିଲେ ।

ସହଜ ଓ ସରଳ ଓଡ଼ିଆ ଭାଷାରେ ଗ୍ରାମ୍ୟ-ଜୀବନ ଚିତ୍ରଣ କରି ଫକୀରମୋହନ ବହୁ କ୍ଷୁଦ୍ର ଗଳ୍ପ ଏବଂ କେତେଖଣ୍ଡି ଉପନ୍ୟାସ ଲେଖିଥିଲେ । ତାଙ୍କର ଗଳ୍ପ ପୁସ୍ତକ ମଧ୍ୟରେ ଗଳ୍ପସ୍ୱଳ୍ପ ଏବଂ ଉପନ୍ୟାସମାନଙ୍କ ମଧ୍ୟରେ ଛ’ମାଣ ଆଠଗୁଣ୍ଠ, ମାମୁଁ, ଲଛମା, ପ୍ରାୟଶ୍ଚିତ ପ୍ରଭୃତି ପ୍ରଧାନ । ଏତଦ୍‌ବ୍ୟତୀତ ଫକୀରମୋହନ କାବ୍ୟ ରଚନାରେ ମଧ୍ୟ ହାତ ଦେଇଥିଲେ । ତାହାଙ୍କ

Digitized by srujanika@gmail.com

କବିତା ଗ୍ରନ୍ଥ ମଧ୍ୟରେ ଅବସର ବାସରେ, ବୌଦ୍ଧାବତାର କାବ୍ୟର ନାମ ଉଲ୍ଲେଖଯୋଗ୍ୟ । ସେ ଓଡ଼ିଆ ସାହିତ୍ୟରେ ଗଦ୍ୟ ରଚନାରେ ବିଶେଷ ଉନ୍ନତି ସାଧନ କରିଥିଲେ । ଏଥିପାଇଁ ଦେଶବାସୀ ତାହାଙ୍କୁ ଶ୍ରଦ୍ଧା ସହକାରେ ବ୍ୟାସକବି ଆଖ୍ୟା ଦେଇଥିଲେ ।

ଶଂସିତ 'ସଭ୍ୟ ଜମିଦାର' ଗଳ୍ପଟି ଲେଖକଙ୍କର ଗଳ୍ପସ୍ୱଳ୍ପ ପୁସ୍ତକର ଅନ୍ତର୍ଗତ । ଗଳ୍ପଟିର ବିଷୟବସ୍ତୁ ହେଉଛି ପ୍ରାଚୀନ ଏବଂ ଆଧୁନିକ ଜୀବନର ଚଳଣି । ରାଜୀବଲୋଚନ ମହାପାତ୍ରଙ୍କ ପକ୍ଷରେ ଅଳ୍ପବିଦ୍ୟା ଭୟଙ୍କର ମାରାତ୍ମକ ହେଲା, ଆଧୁନିକ ସଭ୍ୟତା ନାମରେ ସେ ଓ ତାଙ୍କ ପତ୍ନୀଙ୍କ ଜୀବନ ଭୟଙ୍କର ବିଫଳ ହୋଇଅଛି, ତାହାହିଁ ଏ ଗଳ୍ପଟିରେ ପ୍ରକାଶ ପାଇଛି । ଯୁବକମାନେ ବହୁ ସମୟରେ ଗଡ୍ଡଳିକା ପ୍ରବାହରେ ଭାସି ଯାଇଥାନ୍ତି । ଅନେକ ଆଗପଛ ବିଚାର ନ କରି କାର୍ଯ୍ୟ କରନ୍ତି । ଫଳରେ ଜୀବନ ଶେଷରେ ସେମାନେ ଅହଙ୍କାରୀ ପଣ୍ଡିତ ।

ଅହଙ୍କାରୀ ପଣ୍ଡିତମ୍ମନ୍ୟ ପଥଭ୍ରଷ୍ଟ ଆଧୁନିକ ଯୁବକ ଯୁବତୀମାନଙ୍କ ପକ୍ଷେ ଏହି ଗଳ୍ପଟି ଏକ ସ୍ପଷ୍ଟ ସଙ୍କେତ ବାଣୀ । ଚରିତ୍ରଚିତ୍ରଣ, ବିଷୟବସ୍ତୁର ବର୍ଣ୍ଣନା, ହାସ୍ୟରସର ପ୍ରୟୋଗ ଏ ଗଳ୍ପଟିର ସୌନ୍ଦର୍ଯ୍ୟ ବୃଦ୍ଧି କରୁଅଛି । ]

ବାବୁ ବହ୍ଲଲାଲ୍ ବଳ କଲିକତା ବଡ଼ ବଜାରର ଜଣେ ଗଦିଆନ ମହାଜନ । ଜିଲ୍ଲାର ସମସ୍ତ ବେପାରୀଙ୍କର ସେ ଦଣ୍ଡିଦାର । ସମସ୍ତ ମାଲ୍ ଆମଦାନି ରପ୍ତାନି ତାଙ୍କ ହାତବାଟେ ହେଉଥିଲା । ଲକ୍ଷ ଲକ୍ଷ ଟଙ୍କାର କାରବାର । ତେବେ ବର୍ଷ ତଳର କଥା—ରେଳ ନାମ ତ କେହି ଶୁଣି ନ ଥିଲେ—ଷ୍ଟୀମାର ମଧ୍ୟ ଚଳୁ ନ ଥିଲା । ବାଲେଶ୍ୱର ଜାହାଜରେ ମାଲ୍ ଆମଦାନି ରପ୍ତାନି ହୁଏ । କଲିକତା ଆମଦାନୀ ମାଲ୍ ମଧ୍ୟରେ ଧୂଆଁପତ୍ର ପ୍ରଧାନ । କଲିକତାରୁ ମାଲ୍ ଆସି ବାଲେଶ୍ୱର ବନ୍ଦରରେ ଜାହାଜ ଘାଟ ଭିଡ଼େ । ସେ ସ୍ଥାନରୁ ଶଗଡ଼ରେ ସମସ୍ତ ଜିଲ୍ଲାକୁ ଚାଲାଣ ହୁଏ—ଏଥିପାଇଁ ସମସ୍ତ

Digitized by srujanika@gmail.com

ଉତ୍କଳରେ କଲିକତା ଧୂଆଁପତ୍ରର ନାମ ବାଲେଶ୍ୱରୀ । ହେଲେ, ବାଲେଶ୍ୱରୀ ଲୋକେ ଧୂଆଁପତ୍ର ଗଛ କେବେ ଦେଖି ନାହାନ୍ତି ।

ଧୂଆଁପତ୍ର କାରବାର ବଡ଼ ଝଞ୍ଜଟ—ଘୋଡ଼ାଚଢ଼ା ମହାଜନ କଥା ଦେଲେ ଘାସ କାଟେ—ଘାସ କଟା ଘୋଡ଼ାଚଢ଼େ । ମହାଜନେ ବୋଲନ୍ତି, ଦୋକ୍ତା କାରବାର ଅଜ ଗୋଖର ସାପ ଖେଳାଇବା ଏକା କଥା । ବାସନାରେ ରଙ୍ଗରେ ମାଲ ସମାନ । ସେହି ମାଲ ମହଣେ କୋଡ଼ିଏ ତ, ସେହି ମାଲ ମହଣେ ଚାଳିଶ ଟଙ୍କା । ଠିକ୍‌ରା ଦଣ୍ଡିଦାର ନ ଧରି ଲୋକେ ଧୂଆଁପତ୍ର କିଣିବାକୁ ଭରସନ୍ତି ନାହିଁ । ଜଳଗ୍ରାମ ଘରେ ଜଣେ ଭଲ ଠିକ୍‌ରା, ଏଥିପାଇଁ ଓଡ଼ିଶାରେ ନାମଡାକ ।

ମହାଜନଙ୍କ ଘର ଯାଜପୁର ଅଞ୍ଚଳରେ—ଗ୍ରାମ ନାମ ଜଣା ନାହିଁ । ମହାଜନ ଥରେ ଗ୍ରାମକୁ ଆସିଥିଲେ । ଦଶ ବାର ବର୍ଷର ଛେଉଣ୍ଡ ପିଲା ଗୋପାଳିଆ ଗାଁରେ ବୁଲୁଥିଲା । କାଉପୂଅଟା ଅନାଥ ହୋଇ ବୁଲୁଛି, ଦୟା କରି ସାଙ୍ଗରେ ନେଇଗଲେ । ଗୋପାଳ ଗଦିରେ ଥାଏ, ଖାଉଛି ତ ଖାଉଛି—ଅଛି ତ ଅଛି—ତାକୁ ଦେଖୁଛି କିଏ—ପରସ୍ୱପରଦର ଦରକାର କଣ ? ଦିନେ ରାତିରେ କଣ ହେଲା କି, ମହାଜନ ଜଣେ ସଉଦାଗର ପାଖରୁ ପାଞ୍ଚଟା ଅଙ୍କବଙ୍କା ମୋହର କିଣିଲେ । ବାବୁଙ୍କ ମନ ଭାରି ଖୁସି । ମିଳିବା ପଦାର୍ଥ ନୁହେଁ, ବାକ୍‌ସରେ ରଖି ପୂଜା କରନ୍ତେ । ମୋହର ପୁଟୁଳାଟି ଧରି ବସିଥାନ୍ତି, କେତେବେଳେ ତଳେ ରଖି ଦେଲେଣି । ପାଇକାର, ମହାଜନ, ମୋଟିଆ, ମଜୁରିଆ ହିସାବପତ୍ର ଛୁଣ୍ଡିବାକୁ ରାତି ଛ ଘଡ଼ି । ବାବୁଙ୍କର ହୋସ ନାହିଁ, ଗଦି ବନ୍ଦ କରି ଉଠିଗଲେ । ତହିଁ ଆରଦିନ ସକାଳେ ଗୋପାଳ ଯିମିତ ଉଠିଛି, ଗଦିରେ ମୋହର ପୋଟଳା

Digitized by srujanika@gmail.com

ଉପରେ ନଜର ପଡ଼ଗଲ୍, ହାତରେ ଧର ବାବୁଙ୍କ ପାଖକୁ ଧାଇଁଲା । କୁଲ୍‌କୁଡ଼ା ତାଙ୍କ ଅଗରୁ କଲିକତାରେ ଯିମିତ ଚୋପ ପଡ଼େ, ଗଦଅନ୍ ଧାର୍ମିକ ହିନ୍ଦୁ ମହାଜନମାନେ ଗଙ୍ଗାସ୍ନାନକୁ ବାହାରଯାନ୍ତି—ତେବେ ଜାଗାରେ ଠାକୁର ଠାକୁରାଣୀ ଦର୍ଶନ କର ଗଦକୁ ବାହୁଡ଼ବାକୁ ବେଳ ଦୁଇ ଘଡ଼ି । ଧର୍ମକାର୍ଯ୍ୟ କରବାକୁ ସେଇଟା ହେଲା ଅସଲ୍ ବେଳ । ଫୁରସତ୍ ବା କାହିଁ ? ବାବୁଙ୍କ ନ ଭେଟି ଗୋପାଳ ତାଙ୍କ ପଲଙ୍କ ତକିଆ ତଳେ ପୁଟୁଳାଟା ଥୋଇଦେଲା । ତାହାର ବ ସେ କଥା ଅଜ ମନରେ ନାହିଁ । ବାବୁ ସ୍ନାନ ସାର ଆସିବାବେଳକୁ ଗୃହର ବାଦଅ ବାରକ ଗଦ ଝାଡ଼ଝୁଡ଼ କର ଗଙ୍ଗାଜଳ ଛିଞ୍ଚି ଧୂପ ଗୁଗୁଳ ଧୂଆଁ ଜାଳଦେଇ ସାରନ୍ତି । ବାବୁ ବଡ଼ ମାଣ୍ଡିଆକୁ ଅଜଳ ବସି ରୁପାବନ୍ଧା ହୁକାରେ ଭଡ଼ର ଭଡ଼ର କର ଗୁଡ଼ାଖୁ ପିଇବାକୁ ବସିଲେ । ଅଗରେ ଦୁଇକଡ଼ା କଣା କଉଡ଼ି ବନ୍ଧା ବ୍ରାହ୍ମଣ ହୁକା—କାୟସ୍ଥ ହୁକା—ନବଶାଖ ହୁକା—କଂସା ବଇଠକରେ ଥୁଆ ହୋଇଛି । ଏଇଟା ହେଲା କଲିକତା ସବୁ ଗଦର ଦସ୍ତୁର ।

ବେଳ ଛ ଘଡ଼ିବେଳେ ହଠାତ୍ ବାବୁଙ୍କର ମନରେ ପଡ଼ିଗଲା ମୋହର କଥା । ହଁ, ମୋହର କାହିଁ—ବାବୁ ଛିଡ଼ା ହୋଇ ପଡ଼ିଲେ, ହୁକାଟା ହାତରୁ ଖସି ପଡ଼ି ନଳିଆ ପାଣି ଗଦଯାକ ବୁଣି ପଡ଼ିଲାଣି—ଦେଖୁଛି କିଏ । ପାଞ୍ଚଟା ମୋହର, ବଡ଼ କଥା ନୁହେଁ—ଏ ଯେ ହେଲା ଅକବର୍ଶ୍ଵ ମୋହର । ସେହିପରି କପାଳଅ ଲୋକକୁ ଲକ୍ଷ୍ମୀ ଅଲିଙ୍ଗନ କରନ୍ତି—ଅକବର୍ଶ୍ଵ ମୋହର ମିଳେ । ସେ ମୋହର ଗଲେ ଲକ୍ଷ୍ମୀ ଛାଡ଼ିଯାଏ । ବାବୁ ତ ମୁଣ୍ଡରେ ହାତ ଦେଇ ଗୁମ୍ ମାର ବସିଗଲେ । ଗୋପାଳ ବେପେଇ ଘରେ ବସିଥିଲା—ମୋହର ଖୋଜା ଶୁଣି ଧାଇଁ ଅସିଲା—ବାବୁଙ୍କ ହସିହସି କହିଲା, "ଅଛି, ଅଛି । ମୋହର ଅଛି ।" ବାବୁ ଧାଇଁ ଅସି ଗୋପାଳକୁ କୁଣ୍ଢେଇ ପକାଇଲେ ।

Digitized by srujanika@gmail.com

ଗୋପାଳ ମୋହର କାଢ଼ି ଦେଇ ପାଇବାର ହାଲ ସବୁ କହିଲା— ବାବୁ ଦଣ୍ଡେଯାଏ ତାକୁ ଅନାଇ ନିଶ୍ୱାସଟାଏ ପକାଇଲେ ।

ସେହିଦିନ ଭିତରୁ ଭୁଲାଟାରେ ହେଲେ ବାବୁ ଦଶଥର ଗୋପାଳରେ, ଗୋପାଳରେ ଡାକ ପକାଉଥିବେ । ଭୋଜନ ବେଳେ ଥାଳୀ ପାଖରେ ଗୋପାଳ ଅବଖୁରାରେ ଜଳ ଥୋଇ ନ ଦେଲେ ବାବୁଙ୍କ ଆଉ ଜଳ ଭଲ ଲାଗେ ନାହିଁ । ବାବୁଙ୍କ ବଡ଼ଅ ଗୋପାଳ ଗୁଣିଆ । ଶେଷ ପଇସାଟା ଗୋପାଳ ଜିମା । ବାବୁଙ୍କ ଶ୍ରଦ୍ଧା ଦେଖି ଚାକର ଆଉ ପାଞ୍ଚଜଣ ବି ତାକୁ ମାନିଲେଣି । ବାବୁଙ୍କ ଇଚ୍ଛା, ବଡ଼ ଗୋଟିଏ କଣ୍ଟୁ ପାଇଟିରେ ତାକୁ ଲଗାଇଦେବ । ହେଲେ ଓଡ଼ିଆ ପିଲା—ମଫସଲ ଗାଁରେ ଘର—ଏଣେ ତ କଲିକତାଟା ଠକ ଫନ୍ଦିକଟା ଖଣି—କଣ ବୋଲୁ କଣ ହୋଇଯିବ—ହେଉ, ଆଉ ଟିକିଏ ପାଚି ଯାଉ ।

ଦିନ ବେଳ ଛ ଘଡ଼ିଯାଏ ଚୁଲିରେ ଲଣ୍ଡା ପଡ଼ିନାହିଁ । ସେ ଫେଇଆ ବ୍ରାହ୍ମଣ କାହିଁ ? ହଁ, ଦେଖ ଦେଖ, ବାବୁଙ୍କ ଟଙ୍କା ସିନ୍ଦୁକ ଚାବି ଭଙ୍ଗା—ପାଞ୍ଚ ଶହ ଟଙ୍କାର ଥଳିଟା ନାହିଁ । ତେର୍ ଖୋଜ ତଲାସ ହେଲା, ଥାନାରେ ଏତଲା ଦିଆଗଲା, ଆଉ ପୂଝାରୀ— ଏକାବେଳକେ ଗୁମ୍ । ଗୋଳମାଳରେ ବେଳ ଗଡ଼ିଗଲାଣି—ବାବୁ ଉପାସ ବସିଛନ୍ତି—ବଙ୍ଗାଳୀ ବ୍ରାହ୍ମଣ ହାତରୁ ତ ଖାଇବେ ନାହିଁ, ଏତେ ଚଞ୍ଚଳ ଓଡ଼ିଆ ବ୍ରାହ୍ମଣ ବା କାହିଁ ଘଟୁଛି ? ଗୋପାଳ ହାତ ଯୋଡ଼ି କହିଲା, "ଆଜ୍ଞା । ମୁଁ ତେବେ ଦିଟା ଚଢ଼େଇ ଦିଏଁ ?" ବାବୁ କହିଲେ, "ତୁ ପାରିବୁ ରେ ? ଅଚ୍ଛା ହେଉ, ଏ ଓଳିଟା ଚଳି ଯାଉ ।" ବାବୁ ଠା ପିଢ଼ାରେ ବସି ଦେଖିଲେ, ଏତେ ଚଞ୍ଚଳ ପାଞ୍ଚ ତିଅଣ—ପୁଣି ବଡ଼ ଭଲ । ପଚାରିଲେ, "ଅରେ ଗୋପାଳ, ତୁ

Digitized by srujanika@gmail.com

କମିତ ଗନ୍ଧ ଶିଖିଲ ରେ ?" "ଅଜ୍ଞ, ପୂର୍ବାଗ ବନ୍ଧା ଦେଖି ଦେଖି ଶିଖିଛି । ସେ ଗନ୍ଧ ଥିବାବେଳେ ମୁଁ ବସି ଦେଖୁଥାଏଁ ।"

ବାବୁ ଏଣିକି ଗୋପାଳ ହାତ ଛଡ଼ା ଅନ୍ୟ କାହାର ହାତରୁ ଜଳ ଛୁଅନ୍ତି ନାହିଁ । ପୁଣି ଦେଖିଲେ, ବଜାର ସଉଦା ଖର୍ଚ୍ଚ ଅଧାଅଧି ଊଣା—ପରବାପରକ ଦୁଇଗୁଣ କେବି—ପୁଣି ବଡ଼ ସୁନ୍ଦର ବନ୍ଧା । ବାବୁଙ୍କ ମନ ଜାଣି କେଳ ମାଫିକ ଗୋପାଳ ରନ୍ଧାବଢ଼ାରେ ଲାଗିଥାଏ । ପୂର୍ବାଗ ତ ବଜାର ସଉଦା ଘିଅ ତେଲ ସବୁଥିରୁ କେଷା କାଟିବ—ସବୁବେଳେ ଅପଣା ଖେଳଘରରେ ଲାଗିଥାଏ—ବାବୁ ଭଲ ଖାଇଲେ, ମନ୍ଦ ଖାଇଲେ, ତାର କଣ ଯାଏ ? ବାବୁ ଥରେ ଗାଁକୁ ଯାଇ ଗୋପାଳକୁ ଗୋଟିଏ ଘର ବନାଇ ଦେଇ ବାହା କରାଇ ଦେଲେ । କନ୍ୟାଟି ଯେମିତ ଦେଖିବାକୁ ଝୌଲ୍‌ଜାଉଲ, ସେମିତ ଗୁଣ—ପଡ଼ୋଶୀ ପଡ଼ିବା ଦିନରୁ ଦିନକୁ ଦିନ ଗୋପାଳର ଘର ବଢ଼ୁଛି । ଗୋପାଳ ରନ୍ଧାବଢ଼ା ସାର ସବୁବେଳେ ଗଦରେ ବାବୁଙ୍କ ପାଖେ ପାଖେ ଥାଏ—ଛୁଟ୍ଟା ବସି ଥାଏ ନାହିଁ—କେତେବେଳେ କଣ୍ଟା ଧରୁଛି ତ, କେତେବେଳେ ମାଲ୍ ସାଇତାରେ ଅଛି ।

ମାଲ୍ କଣା ବଡା ଛକଗୁଡ ଗୋପାଳ ବେଶ୍ ଜାଣିଗଲାଣି । ବାବୁ ଢେର୍ ଥର ଲାଭୁଲେଣି, ଅପେ ଏଡ଼େ ପ୍ରବୁଣା ଲୋକ ହେଲେ ବି ଥରେ ଥରେ ଗୋପାଳ ବଳପଡ଼େ—ତା କଥାରେ ଚାଲିଲେ ଠକିବାକୁ ହୁଏନାହିଁ—ବେଶ୍ ଦ ପଇସା ଲାଭ ହୁଏ । ଗୋପାଳ ଅନ୍ୟ ସ୍ୱେଷେରଅ ନୁହେଁ—ବେପାରରେ ବାବୁଙ୍କ ଡାହାଣ ହାତ । ବାବୁ ବୁଢ଼ା ହେଲେଣି—ପାଠ ଲାଗାଲୁ ଯାଇ ଅସି ଖାଇନ୍ତି ନାହିଁ—ଯାଁ ଦରକାର ଗୋପାଳ କଥା । ଏବେ ଅନ୍ୟ ସେ

Digitized by srujanika@gmail.com

ଗୋପାଳ ନୁହେଁ—ଗଦରେ ତାଙ୍କନାମ ସାନବାବୁ । କାଗଜପତ୍ରରେ ଗୁମାସ୍ତା ଲେଖେ ବାବୁ ଗୋପାଳଚନ୍ଦ୍ର ମହାପାତ୍ର ।

ବାବୁ ଗୋପାଳଚନ୍ଦ୍ର ମହାପାତ୍ରେ ସନ୍ଧାନ କରି ବୁଝିଲେ, ଯଶୋର,ମୋତିହାର,ପାବନା ଅଞ୍ଚଳରୁ ଯେଉଁସବୁ ହଳଦୀ, ଧୂଆଁ ପତ୍ର ସରକ * ଆସେ, ପ୍ରଥମେ ଚୃଷୀଠାରୁ କିଣେ ଭୁଲ୍ବେପାରୀ—ସେ ବିକେ ପାଇକାରକୁ—ପାଇକାର ହାତରୁ କିଣେ ଗୋଦାମବାଲା —ଦଣ୍ଡିଦାର ତା ପାଖରୁ ମାଲ୍ କିଣି ଚାଲାଣ ଦିଏ । କଲିକତାରେ ମାଲ୍ ପହଞ୍ଚିବାବେଳକୁ ଉନାଟା ହାତରେ ଲାଭ ଲାଗିଯାଏ । ମହାପାତ୍ରେ ଦିନେ କେଳ ଉଣ୍ଡି ମହାଜନଙ୍କୁ ଜଣାଇଲେ, "ଆଜ୍ଞା, ବେପାରର ଲାଭ ବିକା ଜାଗାରେ ନୁହେଁ, କିଣା ଜାଗାରେ । ଏହି ଯେ ଧୂଆଁ ପତ୍ର, ହଳଦୀ ସରକ ଆସୁଛି, ମୁଁ ଥରେ ଯାଇ ଠିକଣା ଜାଗାଟା ବୁଝି ଆସେଁ ।"

ମହାଜନଙ୍କ ଅନୁମତି ନେଇ ସାନବାବୁ ସଳଖେ ସଳଖେ ଠିକଣା ଜାଗାକୁ ଚାଲିଗଲେ । ମଝିରେ କାହାରିକୁ ନ ଧରି ଚୃଷମୁଣ୍ଡରେ ଚୃଷୀମାନଙ୍କଠାରୁ ସଉଦା କଲେ । ଦୁଇ ବର୍ଷ ଏହିପରି କାମ ଚାଲିବାରୁ ଦେଖାଗଲା, ପୂର୍ବଠାରୁ ଦୁଇଗୁଣ ଲାଭ ବେଶୀ । ମହାପାତ୍ରେ ଏବେ କାହାରି ଚାକର ନୁହନ୍ତି, ଲାଭରେ ଚାରିପଣୀ ଅଂଶ ଭାଗୀ ।

ପାଞ୍ଚ ସାତ ବର୍ଷ ଏହିପରି କାମ ଚାଲିଲାଣି—ମହାପାତ୍ରେ ବର୍ତ୍ତମାନ ଲକ୍ଷପତି । ସେ ମନା କରୁଁ କରୁଁ ମହାଜନ ବଳେ ଗ୍ରାମରେ ଦଶ ବାର ହଜାର ଟଙ୍କା ଲଗାଇ ଗୋଟାଏ ବଡ଼

---

* ବାଣିଜ୍ୟ ସକାଶେ ଦ୍ରବ୍ୟମାନ ।

Digitized by srujanika@gmail.com

ଦୋମହଲା ଘର ବନାଇଦେଲେ । ଖଣ୍ଡେ ତାଲୁକ ବି କିଣି ଦେଲେଣି । ମହାଜନଙ୍କର ଇଚ୍ଛା, ଗୋପାଳ ଖୁବ୍ ବଡ଼ ଲୋକ ହେଉ । ହେଲେ, ଗୋପାଳର ବଡ଼ଲୋକୀ ଚାଲିଚଳଣି ନାହିଁ—ଧନ ସଞ୍ଚ କାମରେ ଲାଗିଥିଲେ ଅନନ୍ଦ । ଗଦିର ସବୁ ମାମଲତ ତହବିଲ ଚାବି ମହାପାତ୍ରଙ୍କ ହାତରେ । ବଳେ ଏବେ ତ୍ରିନ ହୋଇ ଗଦିରେ ମାଲ ଗଡ଼ାଉଥାନ୍ତି ।

ବାବୁ ଗୋପାଳଚନ୍ଦ୍ର ମହାପାତ୍ରଙ୍କର ଗୋଟିଏ ବୋଲି ପୁଅ—ନାମ ରାଜୀବଲୋଚନ । ପୁଅଟି ପାରି ଗଲାଣି—ଚଉଦ ପୂରି ପନ୍ଦର ଚାଲିଛି । ଗୋପାଳ ବାବୁ ଗ୍ରାମକୁ ଯାଇଥିଲେ—ଅବଧାନେ ଦେଖି ଓଳଗି ଅସି କହିଲେ, "ସାନବାବୁ ଖୁବ୍ ବୁଝିଅ—ଭାରି ପାଠୁଆ—ଖଡ଼ିପାଠ, ପୋଥିପାଠ ସବୁ ଛୁଡ଼ିଲାଣି, ଅଉ ତାଙ୍କୁ ପଢ଼ାଇବାକୁ ପାଠ ନାହିଁ ।" ଅସଲ କଥା, ରାଜୀବଟା ଭାରି ଦୁଷ୍ଟ—ଚାଟଶାଳୀରେ ଚଡ଼ ଉତ୍ପାତ କରେ—ଅବଧାନଙ୍କ ସଙ୍ଗରେ ବି ଢୋଖଡ଼ ମୋଖଡ଼ ଲଗାଇଲାଣି । ବଡ଼ଲୋକ ପୁଅ—ଜମିଦାର ପୁଅ ବୋଲି ଅବଧାନେ ଶଙ୍କି ରହିଥାନ୍ତି, କିଛି କହି ପାରନ୍ତି ନାହିଁ । ବାବୁ ପୁଅର ପ୍ରଶଂସା ଶୁଣି ଭାରି ଖୁସି । ଅବଧାନେ ଗୋଟିଏ ଯଥା, ପାଞ୍ଚୋଟି ଟଙ୍କା ପୁରସ୍କାର ପାଇ ଦଣ୍ଡବତଟା କରି ମେଲାଣି ଘେନିଲେ । ସାନ୍ତାଣୀ (ରାଜୀବଙ୍କ ମାତା) ସାନ୍ତଙ୍କୁ କହିଲେ, "ରାଜୀବ ମୋ ବୋଲ ମାନେ ନାହିଁ—ଦିନଯାକ ଗାଁ ଟୋକାଙ୍କ ସାଙ୍ଗରେ ଦାଣ୍ଡରେ ବୁଲୁଥାଏ—ତାକୁ ସଙ୍ଗରେ ଘେନି ଯାଅ ।" ରାଜୀବକୁ କଲିକତା ଘେନିଯାଇ କାମ ଶିଖାଇବାପାଇଁ ବାବୁଙ୍କର ବି ଇଚ୍ଛା ଥିଲା ।

କଲିକତା ବଳବାବୁ ମହାଜନ ଗଦି ସାଙ୍ଗରେ ବଡ଼ ବଡ଼ ଇଂରେଜ ସଉଦାଗର ହାଉସ୍‌ମାନଙ୍କର କାରବାର । ମହାପାତ୍ର ବାବୁ

Digitized by srujanika@gmail.com

କୋଠିର ବଡ଼ ବଡ଼ ସାହେବଙ୍କ ପାଖକୁ ଗଲେ ଗୋଟାଏ ଦୋଭାଷୀ ଦରକାରେ କଥା ଚଳେ । ବାବୁ ଇଂରାଜୀ ଜାଣନ୍ତି ନାହିଁ—ସାହେବ ବି ଓଡ଼ିଆ ବୁଝନ୍ତି ନାହିଁ । ବାବୁ ଢେର୍ ଥର ବଡ଼ଲେଣି, ମଝିରେ ଦୋଭାଷୀ ଖାଇଲେ ମାରନ୍ତାଏ । ସଞ୍ଜୀବ ଯେବେ ଇଂରାଜୀ ପାଠ ପଢ଼ି କାମରେ ଲାଗିବ, କେହି ଠକାଇ ପାରିବ ନାହିଁ । ଗଦର ସରକାର କେଲ୍କାଟା ଏଣ୍ଡ୍ ଏକାଡେମିରେ ସଞ୍ଜୀବ ବାବୁଙ୍କ ନାମ ଲେଖାଇ ଦେଇ ଆସିଲା । ପଢ଼ା ଚାଲିଛି ତ ଚାଲିଛି—ମାସକୁ ଥରେ ସ୍କୁଲ୍ ଦରମା ଓ କିତାପର ଦାମ ନେବାବେଳେ ବାପ ପୁଅଙ୍କର ଭେଟ । ବାପେ ପାଠ ସବୁ କେବେ କଣ. କିପରି ପଢ଼ୁଛି ପଚାରିବାକୁ ବି ବେଳ ନାହିଁ । ତିନି ଚାରି ବର୍ଷ ବିତିଗଲାଣି । ମାସକୁ ମାସ ସ୍କୁଲ ଦରମା ଆଉ କିତାପର ଦାମ ପଚାଶ ଟଙ୍କାରୁ ବଳିଲାଣି । ଦିନେ ବାପେ ପଚାରିଲେ, 'କିରେ ସଞ୍ଜୀବ, ଏବେ ଏତେ ଖରଚ କିଆଁ ?' ସଞ୍ଜୀବ ବାବୁ ଜବାବ୍ ଦେଲେ—"ବାପା, ମୁଁ କ୍ଲାସ ଢେର୍ ଉପରକୁ ଉଠି ଗଲିଣି, ସେଥିପାଇଁ ଏତେ ଖରଚ ।" ବାପେ କହିଲେ, "ତେବେ ଆଉ ପଢ଼ ନା, ଆ କାମରେ ଲାଗ ।" ସଞ୍ଜୀବ ବାବୁ କହିଲେ, "ନା ବାପା, ପାସ୍ ନ କଲେ ଇଂରାଜୀ ପାଠ ହୁଏ ନାହିଁ ।" ମହାପାତ୍ରେ ବି ଶୁଣିଥିଲେ, ଇଂରାଜୀରେ ଗୋଟାଏ ପାସ୍ ହୁଏ । କହିଲେ, "ହଁ ରେ, ସେ କଥା ମତେ ଜଣା ଅଛି । ତୁ ବେଶୀ ବେଶୀ ପାସ୍ କରି ପକା; ଯେତେ ଟଙ୍କା ଲାଗିବ ଲାଗୁ ।" ବାପ ପୁଅ ଦୁହିଁଙ୍କ ମନ ଖୁସି ।

ଚାରି ପାଞ୍ଚ ବର୍ଷ ମଧ୍ୟରେ ବାବୁଙ୍କ ଇଂରାଜୀ ପଢ଼ା କେତେ ଦୂର ହେଲା, ସେ କଥା ଜଣା ନାହିଁ, ମାତ୍ର ଢେର୍ ଢେର୍ ସଭ୍ୟ ସମିତିରେ ଉପସ୍ଥିତ । ଥିଏଟର ଆଉ ସୁସ୍ଥାନ କୁସ୍ଥାନ ଭ୍ରମଣ ବିଷୟରେ ବାବୁ ପକ୍କା ହୋଇ ଗଲେଣି । ସ୍ୱଦେଶର ଉନ୍ନତି ସାଧନ ନିମନ୍ତେ

Digitized by srujanika@gmail.com

କେତେ ଜଣ ବନ୍ଧୁ ମିଳି ଏକାବେଳକେ ଯୋଡ଼ିଏ ସମିତି ସ୍ଥାପନ କଲେ । ମଙ୍ଗଳବାର ଦିନ 'କୁସଂସ୍କାର-ବିମର୍ଦ୍ଦିନୀ', ଶନିବାର 'ନାରୀସ୍ୱାଧୀନତା ସଂବର୍ଦ୍ଧିନୀ' ସଭାର ଅଧିବେଶନ ହୁଏ । ଦୁଇ ସଭାର ସମ୍ପାଦକ ନିଜେ ବାବୁ । ସଭାର ସମସ୍ତ ବ୍ୟୟ ବହନ କରିବା ତ ସମ୍ପାଦକ ପକ୍ଷରେ ଉଚିତ—ଏଇଟା ହେଲା କଲିକତାର ନିୟମ । ସଭାରେ ଢେର ଢେର ବକ୍ତୃତା ହୁଏ—ସମ୍ପାଦକ ଢେର ଥର ବକ୍ତୃତା କଲେଣି—ତାଙ୍କ ବକ୍ତୃତାରେ ଯେଉଁଦିନ ବେଶି ହାତତାଳି ପଡ଼େ, ସେଦିନ ହୋଟେଲବାଲାର ବେଶି ଆୟ ।

ଅକସ୍ମାତ୍ ଗୋଟିଏ ସନ୍ନିପାତ ବେମାରି ଆସିଲା, ଦିନ ତିନିଟା ଭିତରେ ସଜ୍ଞାନରେ ବାବୁ ଗୋପାଳଚନ୍ଦ୍ର ମହାପାତ୍ରଙ୍କ ଗଙ୍ଗାଲାଭ । ପିତାର ମୃତ୍ୟୁରେ ଓଡ଼ା ପକାଇ କାନ୍ଦିବା ଗୋଟାଏ କୁସଂସ୍କାର । ଶୋକପ୍ରକାଶ ଲାଗି ସଭାରେ ତିନିଦିନ ବକ୍ତୃତା ହୋଇଗଲାଣି । ବାବୁ ଖଣ୍ଡେ କଳା କନା ହାତରେ ବାନ୍ଧିଲେ । ସ୍ଥିର ହେଲା ବ୍ରାହ୍ମଣଡାକି ଶ୍ରାଦ୍ଧ କରିବାଟା କୁସଂସ୍କାର, କେବଳ ସଭାଗୃହରେ ଭୋଜି ଆଉ ଦରିଦ୍ରମାନଙ୍କୁ ଅର୍ଥ ବିତରଣ ଓ ଡାକ୍ତରଖାନାମାନଙ୍କୁ ଚନ୍ଦା ଦିଆଯିବ । ମାତ୍ର ମହାଜନ ବଳି ବାବୁଙ୍କ ଉପରେ ଏ ସମସ୍ତ ପ୍ରସ୍ତାବ କାର୍ଯ୍ୟରେ ପରିଣତ ହୋଇ ପାରିଲା ନାହିଁ ।

ମହାଜନ ବଳି ବାବୁ ପିଲାଟିକୁ ଯତ୍ନରେ ପାଖରେ ରଖିଲେ । ଇଚ୍ଛା, ପିତୃକାର୍ଯ୍ୟରେ ଉତ୍ତରାଧିକାରୀ ହେଉ । ମାତ୍ର ସେ ଇଂରାଜୀପାଠ ପଢ଼ିଛି ସତ; ବେପାର ବଣିଜ କାମ କିଛି ଶିଖି ନାହିଁ । ଅଣା କାମରେ ବାପଠାରୁ ବଳି ପଡ଼ିବ—ଗୋପାଳ ଯେ ଅକ୍ଷର ଜାଣି ନ ଥିଲା । ଢେର ବର୍ଷଯାଏ ସ୍କୁଲପାଠ ପଢ଼ିଛି । ମହାଜନ ପାଖରେ ବସାଇ କାମ ଶିଖାଇବାକୁ ଲାଗିଲେ, ମଧ୍ୟ ଶିଖାଇବା ପାଇଁ କର୍ମଗୁରୁ



Digitized by srujanika@gmail.com

ମାନଙ୍କୁ ଉପଦେଶ ଦେଲେ । ଏଣେ ରାଜୀବବାବୁର ଘରରେ ବସିବାକୁ ମନ ନାହିଁ । ମହାଜନେ ଧରାଧରି କରି ବସାଇଲେ । କାମରେ ମନ ନାହିଁ, ଘଣ୍ଟାଏ ବସି ଭାବୁଥାଏ, ମଙ୍ଗଳବାର, ଶନିବାର ରାତରେ କୁଆଡ଼େ ଚାଲିଯାଏ । ବଳବାବୁ ମନେ କଲେ, ହାତରେ ପାଇଟି ପଡ଼ିଲେ ବା ବାଟକୁ ଆସିବ—ଯେ କାମ ଦେଲେ, ଲୋକ ଆଜ ମୂଳରୁ ତ୍ରୁଟି କରି ବସେ ।

ଲଗ ଲଗ ଯୋଡ଼ାଏ ସଭାରେ ସମ୍ପାଦକ ଅନୁପସ୍ଥିତ ହେବାରୁ ସଭ୍ୟମାନେ ବଡ଼ ଖପା ହୋଇ ଗଲେଣି । ଅନୁପସ୍ଥିତର କାରଣ ସନ୍ଧାନ କରି ଦିନେ ଜଣେ ସଭ୍ୟ ସ୍ୱାଧୀନତା ବିଷୟରେ ଭାରି ଗୋଟିଏ ବକ୍ତୃତା କଲେ । ସେଥିରେ ମର୍ମ—ଶିକ୍ଷିତ ଜମିଦାର ସନ୍ତାନ ଟଙ୍କାରେ ପର ଅଧୀନରେ ଚାକିରି କରିବା ଉଚିତ ନୁହେଁ । ବକ୍ତୃତା ସଙ୍ଗେ ସଙ୍ଗେ ଗୋଟିଏ କବିତା ପାଠ କରିଥିଲେ—

ଯାହାର ଅଛି ଧନ ଜ୍ଞାନ ଅଧିକ,
ଚାକିରି କଲେ ତା ଜୀବନେ ଧିକ ଧିକ ।

ସଭାରେ ଖୁବ୍ ହାତତାଳି ପଡ଼ିଲା—ରାଜୀବ ବାବୁଙ୍କ ମନରେ କଥାଟା ଲାଗିଗଲା ।

ତହିଁ ଆରଦିନ ଦିନଯାକ ରାଜୀବ ବାବୁଙ୍କ ତେର ଖୋଜତଲାସ୍ ହେଲା, ଭେଟ ମିଳିଲା ନାହିଁ । ମହାଜନ ଆଗରୁ ଭାରି ଖପା ହୋଇ ଥିଲେ, କେବଳ ଗୋପାଳକୁ ମନରେ କରି କିଛି କହି ପାରୁ ନ ଥିଲେ । ସଞ୍ଜବେଳେ ଭେଟ ପାଇବାରୁ ତାକୁ କାରବାରରୁ ଜବାବ ଦେଲେ । ରାଜୀବ ବାବୁ ତା ଲୋଡ଼ୁଥିଲେ । ଇଚ୍ଛା ଥିଲା, ଅନ୍ୟ ଜାଗାରେ ବସା କରି ସଭା ସମିତି ଚଳାଇବେ—ମାତ୍ର ପାରିହେଲା ନାହିଁ । ମହାଜନ ବଳବାବୁ ଧରାଧରି କରି ଗ୍ରାମକୁ ପଠାଇ ଦେଲେ ।

Digitized by srujanika@gmail.com

ପାଣ୍ଡିଅ ଗୁମାସ୍ତା ପ୍ରଜାପାଟକଙ୍କ ମନ ଭାରି ଖୁସୀ । ନୂଆ ଜମିଦାରଙ୍କ ଅଧବାଟରୁ ପାଗ୍ଲେଟି ନେଲେ । ଶୁଣିଥିଲେ, ନୂଆ ଜମିଦାର ସରକାରୀ ସ୍କୁଲରେ ଢେର ପାଠ ପଢ଼ି ତାଲିମ ହୋଇଛନ୍ତି । ଭେଟିବା ପାଇଁ ତାଙ୍କୁ ଅରଦନ ସକାଳେ ଗୋଟିଏ ସଭା ହେବାର ସ୍ଥିର ହେଲା । ସଭା ନାମ ଶୁଣି ଜମିଦାରଙ୍କ ମନ ଭାରି ଖୁସୀ । ଟିକ୍ ନିରୁପିତ ବେଳରେ ପୁରୁଣା ବୁଢ଼ାପାଣ୍ଡିଅ ରଙ୍ଗାଧର ମହାନ୍ତି ଜମିଦାରଙ୍କୁ ଗାଦରେ ବସାଇ ଦେଲେ । ତାଙ୍କର କଣା ଦନଠାରୁ ମହାନ୍ତି ଶେଠ ପାଣ୍ଡିଅ କାମରେ ଅଛନ୍ତି । ଲୋକଟି ବଡ଼ ବିଶ୍ୱାସୀ, କାମଦାର ଲୋକ, ସାଆନ୍ତାଣୀଙ୍କ ଡାହାଣ ହାତ, ତାଙ୍କ ଯତ୍ନରେ ଜମିଦାରୀ ଅୟ ଖୁବ୍ ବଢ଼ିଛି । ଜମିଦାର ତ ସବୁଦନେ କଲିକତାରେ । ଏହାଙ୍କୁ ଧରି ସାଆନ୍ତାଣୀ ସବୁ ମାମଲତ ବୁଝାସୁଝା କରୁଥିଲେ ।

ତାଲୁକ ମଧ୍ୟରେ ଶାମପୁର ଗ୍ରାମଟି ସବୁଠାରୁ ବଡ଼— ଥିଲାଲୋକ ଢେରେ । ଗୋପାଳ ବାବୁ ଗ୍ରାମରୁ ଢେର ଲୋକଙ୍କୁ କଲିକତାରେ ନାନା କାମରେ ଲଗାଇ ଦେଇ ରୋଜଗାର କରାଇ ଦେଉଥିଲେ । ବାବୁଙ୍କ ସାହାଯ୍ୟ ଓ ଯତ୍ନରେ ଢେର ପିଲା କଟକରୁ ଶିକ୍ଷିତ ହୋଇ ଅସିଛନ୍ତି । ବଡ଼ ବଡ଼ ଗୃହୀ, ସରକାରୀ ଚାକରିଆ, ମହାଜନ ଲୋକଙ୍କ ଗଣା ଅଧିକ ଗୁଳଣ ପଞ୍ଚାଶ ସରିକି ବାହାରି ମାଇବେ । ନୂଆ ଜମିଦାର ବାବୁ ଖୋଜି ବସିଲେ ଗ୍ରାମ ମଧ୍ୟରେ ଶିକ୍ଷିତ କୁସଂସ୍କାରବର୍ଜିତ ଲୋକ ଅଛନ୍ତି କି ନାହିଁ । ପ୍ରାଇମେରୀ, ଅପର ପ୍ରାଇମେରୀ ପାସ୍, ଇଣ୍ଟରେନ୍ସ ଫେଲ୍ ଢେର ଶିକ୍ଷିତ ସ୍ୱାଧୀନମନା ଲୋକ ଗ୍ରାମରେ ବୁଲୁଥିଲେ, ଜମିଦାରଙ୍କ ଅହ୍ୱାନରେ ତୁରନ୍ତ ହାଜର ହୋଇଗଲେ । ଜମିଦାରୀ କଚେରୀ ଘରେ ସନ୍ଧ୍ୟା ସମୟରେ ପ୍ରଥମ ସଭା ବସିଲା । ନିଜେ ଜମିଦାର ବାବୁ ଢେର ବକ୍ତୃତା କଲେ ।

Digitized by srujanika@gmail.com

ସେଥିର ସାର ମର୍ମ—ହେ ସଭ୍ୟ ମହୋଦୟଗଣ । ଏ ଦେଶର ଦୁଃଖ ଦୁର୍ଦ୍ଦଶାର କାରଣ ଲୋକଙ୍କ ଧନ ଅଲ୍ପ ପର ଜଣାଯିବ । ମୂର୍ଖତା, କୁସଂସ୍କାର, ଅବଳା ଭଗିନୀମାନଙ୍କୁ ଘର ଭିତରେ ଲୁଗାଇ ରଖିବା ସମସ୍ତର ମୂଳ—ଏ ସମସ୍ତ ଦୂର କରିବା ସର୍ବାଗ୍ରେ ଉଚିତ । ଅଳ୍ପ ସମୟ୍ରେ କିଛି ନ ବୁଝି ପାରି ମୁହଁ ଗୁହାଁଗୁହିଁ ହେଲେ । ବାବୁ ହରିବୋଲ୍ ପଟ୍ଟନାୟକେ ଚଞ୍ଚଳ ଛିଡ଼ା ହୋଇ ପଡ଼ି କହିଲେ, "ସୁଶିକ୍ଷିତ ଜମିଦାର ମହୋଦୟଙ୍କ ପ୍ରସ୍ତାବ ଦୁଜାୟ୍ୟ କରୁଛି । ଉଚିତ —ଖୁବ ଉଚିତ—ନିଶ୍ଚୟ ଉଚିତ—ଶୀଘ୍ର ଉଚିତ ।" ଜମିଦାର ବାବୁ ଭାରି ଖୁସି ହୋଇ ବାବୁଙ୍କର ପରିଚୟ ପଚାରିଲେ । ହରିବୋଲ୍ ବାବୁଙ୍କ ଘର ଏହି ଗ୍ରାମରେ, ଇଂରାଜୀ ମାଇନର ପାସ୍ । ବଦୂପୁର ପୋଷ୍ଟ ଅଫିସରେ ସବ୍ ପୋଷ୍ଟ ମାଷ୍ଟର ଥିଲେ, ଅନ୍ୟାନ୍ୟ କର୍ମଚାରୀ ଅର୍ଥାତ୍ ପିଅନମାନେ ବଡ଼ ଚୋର ଓ ଅଯୋଗ୍ୟ ଲୋକ ଥିଲେ । ବାବୁ ସେମାନଙ୍କୁ ଶାସନ କରିବାରୁ ସେମାନେ ସରକାରୀ ତହବିଲ୍ ଟ ୧୬୨୩୭ ଚୋରି କରି ବାବୁଙ୍କ ନାମରେ ଗଡ଼ାଇ ଦେଲେ । ମେଜେଷ୍ଟର ସାହେବ ତାଙ୍କୁ ଛ' ମାସ କଇଦରେ ଅଟକାଇ ରଖିଥିଲେ ସତ୍ୟ, ମାତ୍ର ପଛରେ ଅସଲ୍ ହାଲ୍ ଜାଣିପାରି ନିର୍ଦ୍ଦୋଷ ବୋଲି ଛାଡ଼ି ଦେଇଥିଲେ । ବାବୁ ବରକ୍ତ ହୋଇ ପର ଅଧୀନରେ ଚାକିରି ଛାଡ଼ି ଦେଇଛନ୍ତି ।

ଜମିଦାର ବାବୁ ଭାରି ଖୁସି, ଗ୍ରାମ ମଧ୍ୟରେ ତାଙ୍କୁ ଯୋଗ୍ୟ ଲୋକ ବୋଲି ସ୍ଥିର କଲେ । ଅପାତତଃ ଜ୍ଞାନବର୍ଦ୍ଧିନୀ ଓ ସ୍ତ୍ରୀ-ସ୍ୱାଧୀନତାବର୍ଦ୍ଧିନୀ ଯୋଡ଼ାଏ ସଭା ବସିବାର ସ୍ଥିର ହେଲା । ଦୁଇ ସଭାର ସମ୍ପାଦକ ହରିବୋଲ୍ ବାବୁ । ପ୍ରତିଦିନ ନିୟମିତରୂପେ ସଭା କାର୍ଯ୍ୟ ଚଳିଲା । ସଭାକାର୍ଯ୍ୟ ଶେଷ ହେବାକୁ ଅଧିକ ରାତି

Digitized by srujanika@gmail.com

ହୋଇଯାଏ, ସଭ୍ୟମାନେ ଘରକୁ ଯାଇ ପାରନ୍ତି ନାହିଁ, କଚେରି ଘରେ ସେମାନଙ୍କ ଭୋଜନ ପାନର ବନ୍ଦୋବସ୍ତ ହୁଏ । ଗୋଟିଏ ବାଳିକା ବିଦ୍ୟାଳୟ ଓ ଜନାନାସ୍କୁଲ ବସିବାର ବନ୍ଦୋବସ୍ତ ହେଲା ।

ରୋଜ ରୋଜ ଟଙ୍କା ଦାଖଲ କରି କରି ବୁଢ଼ା ପଟ୍ଟନାୟକ ହୟରାଣ—ଟିକିଏ ବିଳମ୍ବ ବା ମୋଡ଼ ମୋଡ଼ ହେଲେ ବାବୁ ଘସି ଖପା ଟଙ୍କାଗୁଡ଼ାକ କୁଆଡ଼େ ଯାଏ, କି କାରବାର ହୁଏ, ଇଦମିତ୍ଥ୍ ନାହିଁ । ଦିନେ ସନ୍ଧ୍ୟାବେଳେ ମା ସାଆନ୍ତାଣୀ ଓ ପଟ୍ଟନାୟକଙ୍କ ମଧ୍ୟରେ କଥା ହେଲା ।

ପଟ୍ଟନାୟକ—ଆଜ୍ଞା, ସବୁ ବୁଡ଼ି ବସିଲା ।

ମା ସାଆନ୍ତାଣୀ—ରହିବ ପଞ୍ଜା—ନିଜେ ମୂର୍ଖ—କିଛି ବୁଝିବାର ନାହିଁ ।—ମୁଲକର ଚୋର ଗୁଣ୍ଡା—ଟିକିଏ ଧର୍ମଭାବ ଭଲ ଥାନ୍ତା । ଏହି ଘରେ ପୁଣି ମଦ ମାଂସ । ରାଧେକୃଷ୍ଣ ରାଧେକୃଷ୍ଣ । ପଟ୍ଟନାୟକେ, ତୁମେ ଅଲଗା ହୋଇଯାଅ ।

ପଟ୍ଟନାୟକେ ନିଶ୍ୱାସଟାଏ ପକାଇଲେ ।

ପଟ୍ଟନାୟକଙ୍କ କିଛି କହିବାକୁ ହେଲା ନାହିଁ । ରାତି ସଭାରେ ସ୍ଥିର ହୋଇଗଲା, ବୁଢ଼ାଟା ଅଯୋଗ୍ୟ, କୁଟସ୍ୱାର୍ଥୀ—ସଭାର ବିଘ୍ନକାରୀ, ସେ ବରଖାସ୍ତ । ହରବୋଲ ବାବୁ ଖାସ୍ ଯୋଗ୍ୟ ଲୋକ, ସଭା ଏବଂ ଜମିଦାରୀ ଦୁଇ କାର୍ଯ୍ୟ ତୁଲାଇ ପାରିବେ । ଏଣିକି ସୁନ୍ଦର କାର୍ଯ୍ୟ ଚାଲିଲା, ଟଙ୍କାର ଅଭାବ ନାହିଁ, ବାଧା ଦେବାକୁ କେହି ନାହିଁ । ଅମଲା ପଧାନମାନଙ୍କ ପ୍ରତି ସାଫ ହୁକୁମ—ଟଙ୍କା ଦାଖଲ । ପ୍ରଥମ ପ୍ରଥମ ସେମାନଙ୍କୁ ଅଡ଼ୁଆ ଲାଗୁଥିଲା, ଏଣିକି ସାଫ ବୁଝିଲେଣି । ଦଶ ଖମାର ଧାନ, ଛ ସାତଟା ଗୋରୁ ମଇଁଷି

Digitized by srujanika@gmail.com

ଫଲ୍, ପାଞ୍ଚବାଟୀ ହାତଗୃଷ୍ଟ, ଯେଣିକି ଅନାଇଲେ ଟଙ୍କା, ସ୍ୱେଚ୍ଛାଚାର ଦାଁଓ କିଏ ଘୁଞ୍ଚେ ?

ବାବୁ ଗୋପାଳଚନ୍ଦ୍ର ମହାପାତ୍ରେ ହଉସ ଅଗରେ ଗୋଟିଏ ପକ୍କା ମନ୍ଦର ତୟାର କରାଇ ରାଧାକୃଷ୍ଣ ଯୁଗଳ ମୂର୍ତ୍ତି ପ୍ରତିଷ୍ଠା କରାଇ ଥିଲେ । ମା ସାନ୍ତାଣୀ ବର୍ତ୍ତିମାନ ଘରୁ ବାହାର ଯାଇ ସେହି ମନ୍ଦରରେ ଅଛନ୍ତି—ପ୍ରତିଦନ ସନ୍ଧ୍ୟାସମୟରେ ବଙ୍କଡେ ଠାକୁର ପ୍ରସାଦ ହବିଷ୍ୟାନ୍ନ । ବୁଢ଼ା ଘୁମୁକରଣ ବି ସେହିଠାରେ ଥାନ୍ତି । ପ୍ରତିଦନ ସନ୍ଧ୍ୟାଠାରୁ ଅଧରାତ୍ରିଯାଏଁ ଭାଗବତ ପାଠ ହୁଏ । ମା ସାଅନ୍ତାଣୀ ଦନଯାକ ଠାକୁର ଅଗରେ ଅଖି ବୁଜି ବସି ମାଳ ଗଡ଼ାଉଥାନ୍ତି । ଦନେ ପଟ୍ଟନାୟକେ ସାନ୍ତାଣୀଙ୍କି କହିଲେ, "ଅଜ୍ଞା, ଶୁଣିଛନ୍ତି ବାବୁଙ୍କ ମଙ୍ଗଳକୃତ୍ୟ ବଢ଼ିବାର ସତ୍ତ୍ୱରେ ସ୍ଥିର ହେଲା । ମୁଁ କହୁଛି, ହେଉ, ବୋହୂ ସାନ୍ତାଣୀ ଅସିଲେ ଅବା ଘରକରଣାଟା ସମ୍ଭଳା ସମ୍ଭଳ କରିବେ ।" ମା ସାନ୍ତାଣୀ ଅଁଟା କରି ପଟ୍ଟନାୟକ ମୁହଁକୁ ଚଢ଼ଏ ଯାଏ ଚାହିଁଲେ—ତହିଁ ଉତ୍ତରରେ ପଚାରିଲେ, '—ଅ— କନ୍ୟା—?' ପଟ୍ଟନାୟକେ କହିଲେ, "ଅଜ୍ଞା, ମୁଁ ନିଜେ ସେ କଥା ବୁଝିବାକୁ ଯାଇଥିଲି, ବାବୁ ଜବାବ ଦେଲେ ଦେଶୀ କନ୍ୟାଗୁଡ଼ିକ ଅଶିକ୍ଷିତା—କୁସଂସ୍କାର ଅସଭ୍ୟତାରେ ବୁଡ଼ିଛନ୍ତି—ଲୁଗା ଖଣ୍ଡେ ପିନ୍ଧି ଜାଣନ୍ତି ନାହିଁ—ଅଧାଲଙ୍ଗଳା ହୋଇଥାନ୍ତି—ମୁହଁ ଢାଙ୍କି ମୂଷା ପରି ଗାତରେ ଲୁଚିଥାନ୍ତି । କଲିକତାରେ ପରା କନ୍ୟା ଠିକ୍ ହେଲାଣି ।" ମା ସାନ୍ତାଣୀ ପାଟି କରି 'ରାଧେକୃଷ୍ଣ—ରାଧେକୃଷ୍ଣ' କହି ତୁନି ହେଲେ । ହାତଯୋଡ଼ି ଠାକୁରଙ୍କୁ ଅନାଇଥାନ୍ତି, ଦୁଇ ଅଖିରୁ ସୋତାଏ ଧାର ବହି ଯାଉଛି । ପଟ୍ଟନାୟକେ ପୁନର୍ବାର କହିଲେ, "କଲିକତାରୁ ବରଯାତ୍ରୀ କିଏ କିଏ ଯିବେ, କି କିଂଖ୍ୱେସନ କେତେ ତୟାର ହେବ, ପଚାରିଥିଲି । ବାବୁ ଠୋ ଠୋ ହସି ଉଠି କହିଲେ,

Digitized by srujanika@gmail.com

'—ଅସଭ୍ୟତା, ଅସଭ୍ୟତା, କୁସଂସ୍କାର । ତୁମେ ତ ଇଂରାଜୀ ଜାଣ ନା—ଦେଖି ବି ନାହିଁ; ସଭ୍ୟ ସମାଜ କଥା କିପରି ଜାଣିବ ? ସେଖାନ୍ ଅଜ୍ ଅଜ୍ ଖରଚ କଥା ଯେ କହୁଲ, ତୁମ୍ଭମାନଙ୍କ ପରି ଅଶିକ୍ଷିତ ଲୋକେ କେତେ ଜମିଦାର ଘର୍ ବୁଡ଼ାଇଲେଣି । ଆହାର—ସମାଜ-ବ୍ୟୟ-ସଂକ୍ଷେପଣୀ ସଭାକୁ ଇଂରାଜୀ ଅଫିସ୍ ଏଲ୍ ଗଠି ଯାଇଛି, ସେଠାରୁ ଯେପରି ବ୍ୟବସ୍ଥା ଆସିବ, ସେହିପରି ବନ୍ଦ ହେବ ।' ମୁଁ ଅଉ କିଛି କହୁଲ୍ ନାହିଁ, ସବୁବେଳେ ମିଜାଜଟା ଚଢ଼ି ରହିଛି, ଭାଟକୁମା ଗୁଡ଼ାକ ଓଳ ତଳେ ଗଣ୍ଡା ଗଣ୍ଡା ଗଡ଼ୁଛି ।"

ସଭାର ସଭ୍ୟମାନଙ୍କ ସାଙ୍ଗରେ ଧର ବାବୁ କଲିକତା ଗୁଲି ଗଲେଣି । କଲିକତା ଗୋଟିଏ ଅଜବ ଜାଗା; ଟଙ୍କା କାଢ଼, ମା ବାପ ଛଡ଼ା ସବୁ ମିଳିବ । ଖିଦିରପୁର ବାଜନରତ୍ନରେ ଗୋଟାଏ ବଡ଼ ଦୋତାଲା ଘରେ ଫ୍ଲାଟ୍ ଲଣ୍ଠନ ଦେବାଲଗିର ଶହେ ଗଣ୍ଡା—ଧନ ଅଲ୍ଅ ପର ଜଳୁଛି—ତଳେ ଗାଲିଗ୍ଚ ଶତରଞ୍ଜି ବିଛଣା—ଗ୍ଲାସରେ ଦୁଇ ତରଫା ଖେମଟା ନାଚ—ଦାସ୍ୟତାଂ—ପୀୟତାଂ ଲାଗିଛି । ଅଖପାଖ ବଜାର ଲୋକେ ଜାଣିଲେ, ଓଡ଼ିଶାର ଗୋଟିଏ ରାଜାପୁଅର ବାହାଘର ।

କନ୍ୟାଟିର ନାମ ନୟନତାରା-ଦୁଃଖପାସୋରା । ବାବୁ ଶୁଣିଥିଲେ, ମଧ୍ୟ ପ୍ରତ୍ୟକ୍ଷ ଦେଖିଲେ, କନ୍ୟା ସୁନ୍ଦରୀ—ସଭ୍ୟା—ସ୍ୱାଧୀନ—ଶିକ୍ଷିତା । ଜମିଦାର ବାବୁ ବିମୋହିତ ହୋଇ ଗଲେଣି । ମନେ କଲେ, ସ୍ୱର୍ଗରୁ ଦେବକନ୍ୟାଟିଏ ଓହ୍ଲାଇ ଅସିଛି । ଧନ ରତ୍ନ ଗୌରବ ହାତରୁ ଛାଡ଼ ନାହିଁ । ଗୁରୁଦନ ହେଲା ବର କନ୍ୟା ମଧ୍ୟରେ ପୂର୍ବାଳାପ ଅର୍ଥାତ୍ Courtship ଗୁଲିଛି—ବଗି ଗଡ଼ କେତେ ଜାଗା ବୁଲି ଅସିଲେଣି । କନ୍ୟା ବାପ ମା'ଙ୍କ ଏକଟା ବଲ

Digitized by srujanika@gmail.com

ଲାଗୁନାହିଁ । ତାହେଲେ ଜମିଦାର ପ୍ରଜା ହାତରୁ ଖସିଯିବ, ସେହି ଡରରେ କେହି କିଛି କହି ପାରୁ ନାହାନ୍ତି । କନ୍ୟାର ଜାତିକୁଳ ଘର ବିଷୟ କେହି ସନ୍ଧାନ କରି ଠିକଣା ପାଇଲେ ନାହିଁ ।

ଟଲ୍ଟ ଲେଟଙ୍କମାନଙ୍କ ସମସ୍ତ ବିଷୟ ସନ୍ଧାନ କରି ନାଗେଲ ସତ୍ୟ କଥାଗୁଡ଼ିକ ଲେଖିବାକୁ ହୁଏ । ଆମ୍ଭେମାନେ ବହୁତ ଅନୁସନ୍ଧାନ ଫଳରେ ଏହାଙ୍କର ପରିଚୟ ପାଇଛୁଁ । ଆସାମ ଚା ବଗିଚା ମେନେଜର ସାହେବ ଗୋଟାଏ କୁଲି ଟୋକାକୁ ବବୁର୍ଚି କାମରେ ବାହାଲ କରିଥିଲେ—ତା ନାମ ମଙ୍ଗା ମଳିକ । ସେ ବଢ଼ି ବଢ଼ି ପଦୋନ୍ନତିରେ ହେଲା ଖାନସମା । ସେହି ବଗିଚାରେ ୩୦।୪୦ ବର୍ଷ ହେଲା ସାହେବମାନଙ୍କ ପାଖରେ ଅଛି । ଗ୍ରାମ ଘର ଜାତି କୁଳ କିଛି ଜଣାନାହିଁ, କୁଆଡ଼େ ବା ଯିବ ? ସେହିଠାରେ ଗୋଟିଏ କୁଲିଆଣୀକୁ ବାହା ହେଲା । ବାହା ହେଲା ହିଁ, ତେବେ ଅନେକ ଦିନ ଯାଏ ସନ୍ତାନ ମୁଖ ଦେଖିଲା ନାହିଁ । ଦିନାଥମେଳା—ସ୍କୁଚୁନାପୂଜା—ଗ୍ରାମଦେବତୀ ମାଜଣା । ଦୁଇ ଜଣଯାକ ଢେର ଢେର ଧର୍ମ କାର୍ଯ୍ୟ କଲେ । ଦରବୁଢ଼ା ବୟସରେ ଗୋଟିଏ କନ୍ୟା ଜାତ ହେଲା, ବୁଢାବୁଢ଼ୀ ଭାରି ଖୁସି । ମା ଝିଅର ନାମ ଦେଲେ ନୟନତାରା-ବାପ ଡାକିଲେ ଦୁଃଖପାସୋରା—ଶେଷରେ ନାମ ହେଲା ନୟନତାରା-ଦୁଃଖପାସୋରା । କନ୍ୟାଟି ଦିନକୁ ଦିନ ବଢ଼ିଲା । ଚା ବଗିଚା ପାଖରେ ଗୋଟିଏ ସ୍କଟିଶ ବ୍ୟାପ୍ଟିଷ୍ଟ ଅର୍ଫେନ ବାଳିକା ସ୍କୁଲ ଥିଲା । ମିସ୍ ଡଗ୍ଲାସ ମିଷ୍ଟ୍ରେସ୍ । ମା ବାପ ଭାରି ଶ୍ରଦ୍ଧା, ଭାରି ଖୁସିରେ କନ୍ୟାଟିକୁ ମୋଜା ଜୋତା ସେମିଜ୍ ଜାକେଟ୍ ପିନ୍ଧାଇ ଦେଇ ସ୍କୁଲକୁ ଛାଡ଼ିଲେ । କନ୍ୟାଟି ବଢ଼ି ବଢ଼ି ପାଠ ପଢ଼ି ପଢ଼ି ତେର ବା ଚଉଦ ବର୍ଷ ହେଲାଣି । କନ୍ୟାଟି ସ୍କୁଲରୁ ଆସି ମା ବାପ ପାଖରେ

Digitized by srujanika@gmail.com

ଭେର ଇଂରାଜୀ କଥା କହେ, ମୋଜା ବୁଟ୍‌ଟା ଦେଖାଏ, ଗୀତ ଗାଏ, ନାଚେ । ଖୁବ୍ ସ୍ୱାଧୀନ; ପୁରୁଷଗୁଡ଼ାଙ୍କୁ ଖାତର କରେ ନାହିଁ । ଏଣେ ମା ବାପ ମୁଣ୍ଡରେ ଜକୁଣି କାମୁଡ଼ିଲାଣି, କେମିତ ବାହା ଦେବେ । ଛୁଟି ନେଇ କଲିକତା ଆସିଲେ, ଭେର ଖୋଜା-ଖୋଜି କଲେ, ମାନ ବାପ ମାର ଜାତିକୁଳ, ଦେଶର ପତା ନ ଲଗିବାରୁ ବର ଜୁଟିଲା ନାହିଁ । ପ୍ରଜାପତି ଘଟସୂତ୍ର, ଜଣେ ଦଲାଲ ଠିକଣା ଲଗାଇ ଦେଲା । ସେହି ଦଲାଲ ବାବୁଙ୍କୁ ଜଣାଇଲା, "ଆପଣ ଜମିଦାର, କଲିକତା ସହରରେ ଭାରି ନାମ ଡାକ ସେହିପରି ମର୍ଯ୍ୟାଦାରେ ବାହାଘର ହେବ ।" ବାବୁ ହୁଁକି ହୁଁକି କହିଲେ, "ଅବଶ୍ୟ, ଅବଶ୍ୟ, ନିଶ୍ଚୟ ।" ମେନେଜର ବାବୁ କହିଲେ, "ଟଙ୍କା ନାହିଁ ଯେ ।" ଦଲାଲ କହିଲା, "ଏ କଣ ଗୋଟାଏ କଥା ? ବାବୁଙ୍କର ପୁଣି ଟଙ୍କାର ଅଭାବ ? ବାବୁ ଆଜ୍ଞା କରନ୍ତୁ, ଏହିଲାଗେ ଦଶ ହଜାର ଟଙ୍କା ଆଣି ଦେବି ।" ଟଙ୍କା ନାମ ଶୁଣି ବାବୁଙ୍କର ଟିକିଏ ହୋସ୍ ହେଲା, ପୁଣି ମନ ଖୁସି, ସଳଖି ବସିଲେ । କଲିକତାରେ ମହାଜନ ଅଭାବ କଣ ? ଖୁବ୍ କାଏଦା କଟକଣାରେ ଜମିଦାରୀ ଲେଖି ନେଇ ଦଶହଜାର ଟଙ୍କା ଦେବାକୁ କହିଲା । ଦଲାଲ ରେକେଷ୍ଟ୍ରୀ କରିବାକୁ ତର ସହୁ ନାହିଁ, ଜଲଦି ଟଙ୍କା ଆଣ । କଲିକତାରେ ଅନେକ ବାବୁ ଅର୍ଥାତ୍ ଦୂର ସମ୍ପର୍କ ସମ୍ପର୍କୀମାନେ ଆଉ ଖିଦିରପୁର ବଜାରର କୁଟୁମ୍ବଘର ବଡ଼ିଆ ସମସ୍ତ ଦୋକାନୀ ନିମନ୍ତ୍ରିତ ହୋଇ ଗଲେ । ନାନାପ୍ରକାର ମିଷ୍ଟାନ୍ନ, ନାନାପ୍ରକାର ପେୟ, ଆସବ, ଦାନ୍ତକୁଣ୍ଡା ପର୍ଯ୍ୟନ୍ତ ଧର ଠିକାଦାର ହାଜର । ତିନି ଦିନଯାଏ ନାଚ ତାମସା ପିଅର ଖୁବ୍ ଧୁମ ଲଗିଛି ।

କରଜ ଦଶ ହଜାର ଟଙ୍କାରୁ ବାହାରେ କେତେ ଟଙ୍କା ଖରଚ ହେଲା, ଆମ୍ଭେମାନେ ସେଥିର ହିସାବ ଦେଇ ପାରିବୁ ନାହିଁ,

Digitized by srujanika@gmail.com

କାରଣ ସେଥିର କଣ୍ଠ ଲେଖାଲେଖି ନାହିଁ । ମେନେଜର ହରବୋଲ ବାବୁଙ୍କ ହାତରେ ନଜରବନ୍ଦ, ନାନା କାର୍ଯ୍ୟରେ ବ୍ୟସ୍ତ ଏବଂ ଜମିଦାରଙ୍କ ସ୍ୱାସ୍ଥ୍ୟ ନିମନ୍ତେ ସବ୍ୟଦେଶ ନିୟମାନୁସାରେ ପାନର ମାନା କିଛି ବଳ ପଡ଼ିବାରୁ ଖର୍ଚ୍ଚ ଟଙ୍କାର ହିସାବ ରଖିବାକୁ ବେଳ ପାଉ ନାହାନ୍ତି ।

ବିବାହ ଶେଷ—ଜମିଦାର ଜମିଦାରାଣୀ ଦେଶରୁ ସର୍ବ୍ୟମ ନଙ୍କ ଧରି ଦେଶକୁ ବାହୁଡ଼ିଲେ । ବର କନ୍ୟା ଗ୍ରାମ ମଧ୍ୟକୁ ପ୍ରବେଶ ବେଳେ ଗ୍ରାମର ପୋଲିସ ପଣ୍ଡା, ଗ୍ରାମର ଭଲ ଭଲ ଲୋକଙ୍କର ବୋହୂ ଝିଅମାନେ ଗୋଟିଏ ନୂଆ ଲୁଗାରେ ସେଥିରେ ଅଳ୍ପ ଗୁହଳ, ଦୂବ ବରକୋଳି ପତ୍ର ଦେଇ ତାହା ଉପରେ ଘିଅ ଦୀପଟିଏ ଥୋଇ ବର କନ୍ୟା ବନ୍ଦାଇ ନେବାକୁ ଆସିଲେ । ଶଙ୍ଖ ହୁଳହୁଳି ଶୁଣି ଜମିଦାର ଜ୍ୱର ଉଠି ଯାଇ 'କୁସଂସ୍କାର, କୁସଂସ୍କାର, ଅସଭ୍ୟତା' କହି ଜୋର ଗୋଟାଏ ପାଟି କଲେ । ସ୍ୱାମୀଙ୍କ ଦେଖାଦେଖି କନ୍ୟା ମଧ୍ୟ 'ଏହା ନିତାନ୍ତ କୁସଂସ୍କାର ଅଛି, ଏହା ଅସଭ୍ୟତା' କହି ଠୋ ଠୋ କରି ହସି ଉଠିଲେ । ଗାଁ ବୁଢ଼ୀସୁଣୀ ଗୁଡ଼ାକ ଏ ସବୁ ଦେଖି ଶୁଣି ଲଜ୍ଜାରେ ଭୟରେ ଅଗଣାରେ ଲୁଗାଟା ତଳେ ଥୋଇ ଦେଇ ଯେ ଯାହା ଘରକୁ ପଳାଇଲେ ।

ପୁଅ ବୋହୂ ହାତ ଧରାଧରି ହୋଇ ମା ସାନ୍ତାଣୀଙ୍କ ସହିତ ସାକ୍ଷାତ କରିବାକୁ ବାହାରିଲେ । ମା ସେତେବେଳେ ଠାକୁରଙ୍କ ଆଗରେ ମାଳଟି ହାତରେ ଧରି ଆଖି ବୁଜି ବସି ଫୁସ୍ ଫୁସ୍ ହରେକୃଷ୍ଣ ନାମ ଜପୁଛନ୍ତି । ବୋହୂର ଗୋଡ଼ର ଲେଉଡ଼ସୋତା ଏଡ଼ିର ଠକ୍ ଠକ୍ ଶବ୍ଦ ଶୁଣି ଚମକି ପଡ଼ି ଠିଆ ହୋଇଗଲେ । ବୋହୂ ଟିକିଏ ହସି ହସି "ଓ ମାଇ ଡିୟର ଶାଶୁ ? ନମସ୍କାର—

Digitized by srujanika@gmail.com

ନମସ୍କାର । କେମନ୍ତ କର ଅପଣ କର" କହି ହାତ ବଢ଼ାଇ ଯେମନ୍ତ ଶାଶୁ ପାଖକୁ ଚାଲିଯିବେ—ବୁଢ଼ୀ ତ "ହୁଁ—ନା—ହୁଁ—ନା—ହୁଁ—ନା—ଅବେ କଏ ଅଛୁରେ—ମଦର ଅପ୍ରତିଷ୍ଠା ହେଲବେ, ବାହାର କର ଡଅରେ—ବାହାର କର ଡଅ—ରେ" ବୋଲି ରଢ଼ି ଛାଡ଼ିଲେ । ଜମିଦାର ବାବୁ ମିସେସ୍ ମହାପାତ୍ରଙ୍କ ହାତ ଧରି ଭିଡ଼ି ନେଲେ—ଭାରି ଖପାଟାଏ ହୋଇ କହିଲେ, "ଅସଭ୍ୟତା—ମୂର୍ଖତା—ଭାରି କୁସଂସ୍କାର । ଓଃ ହୋ । ଲେଡ଼ିକୁ ଇନ୍‌ସଲ୍ଟ ।" ସେହି ମୁହୂର୍ତ୍ତରେ ମା ସାନ୍ତାଣୀ, ବିଶ୍ୱାସୀ ଗ୍ରଧୀ ଆଉ ଗୋଟିଏ ପୁଟୁଳି ଧରି ସବୁ ବାହାରି ଗଲେ—ପ୍ରଶ୍ନ; ମାତାମଠରେ ରହୁଥିବାର ଅଠଦିନ ବାଦ ସମ୍ବାଦ ଆସିଲା ।

କେହି ବାଧା ଦେବାକୁ ନାହିଁ, କେହି କିଛି କହିବାକୁ ନାହିଁ, ସ୍ୱାଧୀନ ଭାବରେ କୁସଂସ୍କାର ନିବାରଣ ଆଉ ଦେଶ ଉଦ୍ଧାର ଉଦ୍ଦେଶ୍ୟରେ ଲାଗି ପଡ଼ିଛନ୍ତି । ରାତି ସାରା ବକ୍ତୃତା ଓ ପାନାହାରରେ କଟିଯାଏ, ଶୋଇବାକୁ ବେଳ କାହିଁ ? ମିସେସ୍ ମହାପାତ୍ର ବି ସଭାରେ ଛିଡ଼ା ହୋଇ କେତେ ଥର ବକ୍ତୃତା କଲେଣି । ଦିନସାରା ଶୋଇଥାନ୍ତି, ପ୍ରଜା ପ୍ରାଟକ କେତେ ଗୁହାରିଆ ଆସିଲେ, ଭେଟ ପାଏ ନାହିଁ । ଯଦି ଭେଟ ମିଳେ, ଏକା ଜବାବ—ମେନେଜର ପାଖକୁ ଯାଅ ।

କେହି ବୋଧେ ସାଅନ୍ତାଣୀ ବୋଲି କହିଦେଲେ ଜମିଦାର ବାବୁ ଭାରି ଖପା ହୋଇଯାନ୍ତି—ନାମ ହୋଇଛି—ମିସେସ୍ ମହାପାତ୍ର । ମାତ୍ର ପୋଇଲିମାନେ ଅଜ ମୂର୍ଖ ଚାକରଗୁଡ଼ାକ ଠିକ୍ ନାମ ଧରି ଡାକି ପାରନ୍ତି ନାହିଁ—କେହି କହେ କିସ୍ ମିସ୍ ମହାପାତ୍ର, କେହି କହେ—ମିସ୍ତ୍ରୀ ମହାପାତ୍ର, କେହି ଡାକେ—ଫିସ୍ ଫିସ୍ ମହାପାତ୍ର, କିନ୍ତୁ ସେଥିରେ ମନା ନାହିଁ, ବରଂ ମିସେସ୍ ମହାପାତ୍ର ହସିପକାଇ ବଡ଼ ଖୁସି ହୁଅନ୍ତି ।

Digitized by srujanika@gmail.com

ମିସେସ୍ ମହାପାତ୍ର ପ୍ରାତଃକାଳରେ ଚା ଖାଇଲା ବାଦ ପୋଷାକ ପିନ୍ଧି ଉଆସ ତଳପିଠି ବଗିଚା ଆଉ ଆଗ ଦାଣ୍ଡରେ ପ୍ରାତଃଭ୍ରମଣ କରି ଆସନ୍ତି । ଦିନେ ବରୁଚିଖାନା ତଦାରଖ କରିବାକୁ ଚାଲିଗଲେ । ତେତେବେଳେ ଚୋଇଲା ପଦା ହାଣ୍ଡିଏ ଗୋବର ପାଣି ଧରି କନା ଖଣ୍ଡିକରେ ଚୁଲ୍ଲୀ ଲିପୁଥିଲା—ଘୋଡାର ଠକ୍ ଠକ୍ ଶବ୍ଦ ଶୁଣି ଯେମିତି ମୁହଁ ବଙ୍କାଇ ପଛକୁ ଚାହିଁ ଦେଇଛି, ଭାରି ପାଟିଟାଏ କଲା, "ଅଲୋ ମୋ ମାଲୋ । ଅଲୋ ବାପାଲୋ । ଘୋଡା ମାଡ଼ି ହାଣ୍ଡିଶାଳରେ ପଶିଲା ଲୋ । ହାଣ୍ଡିଶାଳ ମାରିଗଲା ଲୋ ।" କନା ଖଣ୍ଡି ଫୋପାଡ଼ି ଦେଇ ଏକମୁହାଁ ଧାଇଁଛି । ଅଉ ଉଆସରେ ତାକୁ କେହି କେବେ ଦେଖି ନାହିଁ । ଏଣେ ମିସେସ୍ ମହାପାତ୍ର ଉଅ—ଉଅ—ଉଅ—କହି ଅନ୍ୟ ଅଡ଼କୁ ଧାଇଁଛନ୍ତି—ମୁହଁରେ ରୁମାଲ ଜାକି ନ ଥିଲେ କେଜାଣି ବାନ୍ତି କରି ପକାଇଥାନ୍ତେ । ଏକାବେଳକେ ଶିଶିଏ ଲେଭେଣ୍ଡର ଦେହସାରା ଢାଳି ଦେବାରୁ ଟିକଏ ସୁସ୍ଥ ହେଲେ । ଗୋରୁଗୁଡ଼ ବରୁଚିଖାନାରେ ଢଳା ହୋଇଛି—ଜମିଦାର ଶୁଣି ଭାରି ଖପା—ମୂର୍ଖତା—ଅସଭ୍ୟତା—କୁସଂସ୍କାର । ସେ ଘରେ ସେଫେଇ ହେଲେ ଲୋକଙ୍କ ଖାନା ରୁଚିବ ନାହିଁ—ବାନ୍ତି କରିପକାଇବେ । ଚାର ବୋତଲ ଫେନାଇଲ୍ ଘରସାରା ଢଳାଗଲା ।

ଏହାପରେ ଅଠଦଶ ମାସ ଗଲା ବାଦେ ଦିନେ କରଣମାନେ ମେଳ ବାନ୍ଧି ଆସି ମେନେଜରର ପାଖରେ ଜଣାଇଲେ, "ଖମାରସବୁ ଖାଲି ପଡ଼ିଛି—ଗୋରୁ ମଇଷି ପଲରେ ଲଙ୍ଗଳ ଖଣ୍ଡେ ବି ନାହିଁ—ପାଞ୍ଚବାଟୀ ହାତଚାଷ ପ୍ରଜା ଲଗାଇ ଦେଇ ଯେଉଁ ସଲାମୀ ମିଳିଥିଲା ତାହା ଆସି ସରିଲାଣି—ଆଉ ଏବେ କାହୁଁ ଖରଚ ଯୋଗାଇବୁ ।" ମେନେଜର ତୁରନ୍ତ ଜବାବ ଦେଲେ, "ମାରପିଟି ପ୍ରଜାଙ୍କଠାରୁ

Digitized by srujanika@gmail.com

ଅଗତ୍ରୁଯ ବର୍ଷକର ଖଜଣା ଅସୁଲ୍ କର ।" କୁମ୍ଭୀର ଲୋତକ ଗୋଳିଆ ପାଣି—ଅମଲାମାନେ ଅନନ୍ଦରେ 'ଅଜ୍ଞା' କହି ଦଣ୍ଡବତ ହୋଇ ଚାଲିଗଲେ ।

ଅଉ ଦୁଇ ମାସ ବାଦେ କାର୍ତ୍ତିକ କିସ୍ତି ଟଙ୍କା ଦାଖଲ ନ ହେବାରୁ ତାଲୁକା ନିଲାମରେ ଚଢ଼ିବାର କଟକରୁ ଜବାବ ଆସିଲା । ଠିକ୍ ସେହିଦିନ କଲିକତା ମହାଜନ ଦଶହଜାର ଟଙ୍କା ମୂଳକୁ କଳନ୍ତର ଖର୍ଚ୍ଚା ଓଗେର ଭଡ଼ କୋଡ଼ିଏ ହଜାର ଟଙ୍କା ପାଇଁ ଡିକ୍ରୀଜାରି ପିଅଦା କଲିକତା ହାଇକୋର୍ଟରୁ ଆସି ଚଳନ୍ତି ଅଚଳନ୍ତି ଯାନାସନ ସମସ୍ତ କ୍ରୋକ କରି ପକାଇଲା ।

ସକାଳୁ ଉଠି ମିଷ୍ଟର ଓ ମିସେସ୍ ମହାପାତ୍ର ବଗେଲା ବଗଲି ପରି ବସିଛନ୍ତି—ଜନ ପ୍ରାଣୀ ପାଖରେ ନାହିଁ । ସଭାର ସଭ୍ୟମାନେ ଅଗରୁ ଏକଘରିଆ ହୋଇଥିଲେ—ଗୋବରପାଣି ପିଇ ଜାତିରେ ଉଠିଛନ୍ତି । ଆଉ କି ଆସିବେ ? ବେଳ ବୁଡ଼ିବାକୁ ବସିଲାଣି, ମିଷ୍ଟର ଓ ମିସେସ୍ ଦୁଇଜଣ ଭୋକରେ ଛଟପଟ ହେଉଛନ୍ତି । ସଞ୍ଜ ଲଗିଲାବେଳକୁ ମିସେସ୍ ମହାପାତ୍ର ବହୁ କଷ୍ଟରେ ଖଣ୍ଡେ ଅଳଙ୍କାର କାଢ଼ି ଦେଲେ—ବିକିବାକୁ ଯାଇ ଦେଖିଲେ ପିତଳ ଗିଲ୍ଟି ଖଣ୍ଡିଏ । ଅଉ ଖଣ୍ଡିଏ ଦେଖାଗଲା, ସବୁଗୁଡ଼ାକ ଗିଲ୍ଟି । ବାହାଘର ସମୟରେ ଅଠର ହଜାର ଟଙ୍କାର ଗହଣା କିଣା ଯାଇଥିଲା—ସବୁଗୁଡ଼ାକ ଗିଲ୍ଟି । ଏତେବେଳେ ଦୁଇ ଜଣଙ୍କର ଚେତା ପଶିଲା—ଅଉ ଡିକ୍ରୀଜାରି ପିଅଦା ଜୁଲ୍‌ମରେ ଘରେ ରହି ପାରିଲେ ନାହିଁ । ରାତି ଅନ୍ଧାରରେ କାହିଁ ଅନ୍ତର୍ଦ୍ଧାନ ।

ପାଞ୍ଚ ଛ ବର୍ଷ ବାଦେ ଜମିଦାର ବାବୁ ତାଙ୍କ ଶଶୁର କାମରେ ଆସାମରେ ଖାନସାମାଗିରି କାମ କରୁଥିବାର ଦେଶରେ ଶୁଣାଗଲା ।

Digitized by srujanika@gmail.com

# ମାଂସର ବିଳାପ

## ଲେଖକ : ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ

[ପୁରୀ ଜିଲ୍ଲା ଅନ୍ତର୍ଗତ ବିଶ୍ୱନାଥପୁର ଗ୍ରାମରେ ୧୯୦୦ ଖ୍ରୀଷ୍ଟାବ୍ଦରେ ଏହି ପ୍ରସିଦ୍ଧ ସାହିତ୍ୟିକଙ୍କର ଜନ୍ମ । ବାଲ୍ୟକାଳରେ ଗ୍ରାମ୍ୟ ପାଠଶାଳାରେ ଲେଖକ ପ୍ରାଥମିକ ଶିକ୍ଷାପ୍ରାପ୍ତ ହୋଇଥିଲେ । ସେ କଟକ କଲେଜରୁ ବି. ଏ. ପାସ୍ କରିବା ପରେ ଧାରାବାହିକ ସାହିତ୍ୟ ସାଧନା କରି ଉତ୍କଳ ବାଣୀଭଣ୍ଡାରକୁ ସମୃଦ୍ଧ କରି ଅଛନ୍ତି । ତାଙ୍କର ଉପନ୍ୟାସମାନଙ୍କ ମଧ୍ୟରେ ମାଟିର ମଣିଷ, ମୁକ୍ତାଗଡ଼ର କ୍ଷୁଧା, ଅମରଚିତା, ଲୁହାର ମଣିଷ ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ । ସାଗରିକା, ଘଷିଫଳ, ଶେଷ ରଶ୍ମି, ମୋ କଥାଟି ସରିନାହିଁ ହେଉଛି ତାଙ୍କର କ୍ଷୁଦ୍ର-ଗଳ୍ପ ପୁସ୍ତକ । କାବ୍ୟ କବିତା ମଧ୍ୟରେ ମନେ ନାହିଁ, କ୍ଷଣିକ ସତ୍ୟ, ଛୁଆଟିଏ ଲୋଡ଼ା, ଅମର ଶହୀଦ ପ୍ରଭୃତି ପୁସ୍ତକ ପ୍ରଧାନ । ଲେଖକ ବହୁ ସମାଲୋଚନା, ନାଟକ ଏବଂ ଜୀବନୀ ସାହିତ୍ୟ ମଧ୍ୟ ଲେଖିଛନ୍ତି ।

ଶଂସିତ 'ମାଂସର ବିଳାପ' ଗଳ୍ପଟି ଜୀବଜନ୍ତୁ ଜଗତର କଥାବସ୍ତୁ ଉପରେ ପର୍ଯ୍ୟବସିତ । ଜଲି ଗଡ଼ଜାତ ଜଙ୍ଗଲର ଗୋଟିଏ କୃଷ୍ଣସାର ଏବଂ ଡୋଗ୍ ଗୋଟିଏ ଇଂଲିଶ ଗ୍ରେହାଉଣ୍ଡ । ଜଲିର ଜନ୍ମସ୍ଥାନ ଓଡ଼ିଶାର ନିଭୃତ ଅରଣ୍ୟ; ମାତ୍ର ଡୋଗର ଜନ୍ମସ୍ଥାନ ଥିଲା ଲଣ୍ଡନ ନଗରୀ । ଜମିଦାର ଏହି ଦୁଇଟିଙ୍କୁ ପାଳିଥିଲେ । କ୍ରମେ କ୍ରମେ ଏହି ପଶୁ ଦୁହିଁଙ୍କ ମଧ୍ୟରେ

Digitized by srujanika@gmail.com

ପ୍ରଗାଢ଼ ମୈତ୍ରୀ ଜାତ ହେଲା । ତେଣୁ ଯେଉଁଦିନ ଜମିଦାରଙ୍କ ଲୋକ ମାଂସ ଲୋଭରେ 'ଜଲିକୁ' ବଣ ଜଙ୍ଗଲରେ ବାନ୍ଧିଥିଲେ, ସେଦିନ ଟୋସ୍ ପଶୁ ହୋଇ ମଧ୍ୟ ମଣିଷର ଏହି ଅବିଗ୍ୱର ବିରୁଦ୍ଧରେ ପ୍ରତିବାଦ ଜଣାଇଲା । ଅତିଥି ସାହେବ ହୁଅନ୍ତୁ କିଂବା ଜମିଦାର ହୁଅନ୍ତୁ, ସେମାନେ ତ ନିଷ୍ଠୁର 'ମାଂସର ବିଳାପ' ତାହାର କରୁଣ ପରିଚୟ ଦେଉଅଛି । ]

ଜଲି ଏବଂ ଟୋସ୍ ଅବିଚ୍ଛେଦ୍ୟ ପରମସାଥୀ । କ୍ଷଣେ ଏକ ଅପରକୁ ଛାଡ଼ି ରହିବାକୁ ସହଜରେ ରାଜି ହୋଇ ନାହିଁ । ଜଲି ଥରେ ଅସୁସ୍ଥ ହେଲା, ଟୋସ୍ ତାକୁ ଅହର୍ନିଶ ଜଗି ବସିଥାଏ, ସକଳ ତାଡ଼ନା ତାହା ନିକଟରେ ବ୍ୟର୍ଥ । ଅବଶେଷରେ ସେହିଠାରେ ତାର ପାନାହାର ଯୋଗାଇବା ଲାଗି ହୁକୁମ ହେଲା । ଟୋସ୍‌ର ପାଦ ଥରେ ଜଖମ ହେଲା । ଜଲି ଭଲ କରି ଜାଣେ ଟୋସ୍‌ର ବଳ ଅପରିସୀମ; କିନ୍ତୁ ବୁଝିପାରିଲା ନାହିଁ, କାହିଁକି ତାକୁ ଏତେଦିନ ଏକ ସ୍ଥାନରେ ବନ୍ଦୀ ହୋଇ ରହିବାକୁ ହୋଇଛି । ତାର ପାଦ ମୁଖରେ ସ୍ପର୍ଶ କରି ତାର ବ୍ୟଥା କେଉଁଠାରେ ଜାଣିବା ପାଇଁ ସଚେଷ୍ଟ ହେଲା ।

ଟୋସ୍ ଗୋଟିଏ ଇଂଲଣ୍ଡ୍ ଗ୍ରେ ହାଉଣ୍ଡ୍ ଏବଂ ଜଲି ଗୋଟିଏ ଗଡ଼ଜାତ ଜଙ୍ଗଲର କୃଷ୍ଣସାର । ଟୋସ୍ ଅସିତ ବିଖ୍ୟାତ ଲଣ୍ଡନ ନଗରୀରୁ, ଜଲିର ଜନ୍ମସ୍ଥାନ ଓଡ଼ିଶାର ନିଭୃତ ଅରଣ୍ୟାନୀ; ଟୋସ୍ ସମ୍ପୂର୍ଣ୍ଣ ମାଂସାସୀ, ଜଲି ନିରିହ ଶାକାହାରୀ; କିନ୍ତୁ ଅତି ଘନିଷ୍ଠ ବନ୍ଧୁ ବୁହିଙ୍କ ମଧ୍ୟରେ ସଦ୍ଭାବ ଜନ୍ମି ଯାଇଥିଲା ।

ଟୋସ୍‌ର ଅସୁସ୍ଥତା ନିବାରଣ ପାଇଁ ଜଲି ତାହାର ସର୍ବାଙ୍ଗ ଲେହନ କରି ଶୁଶ୍ରୂଷାରେ ଲାଗିଲା । ଅବଶେଷରେ ଟୋସ୍ ଟିକିଏ ସୁସ୍ଥ ହୋଇ ପ୍ରଥମେ ଅଳ୍ପେ ଅଳ୍ପେ ଚାଲିବାକୁ ଆରମ୍ଭ କଲା । ତା

Digitized by srujanika@gmail.com

ପରେ ଯେତେବେଳେ ବସନ୍ତ ପୁଣି ଲେଉଟିଲା, ଫୁଲର ଗନ୍ଧ ଚହଟିଲା, ଦୁଇ ବନ୍ଧୁ ଦକ୍ଷିଣାସ୍ୟରେ ଇତସ୍ତତଃ ଧାଇଁ କ୍ରୀଡ଼ା କୌତୁକରେ ମଗ୍ନ ହେଲେ—ଯେପରି କି ଏହି ଆନନ୍ଦର ସ୍ରୋତ ଯେଉଁ ଦିଗରୁ ଭାସି ଆସୁଛି, ସେହି ରହସ୍ୟମୟ ଦେଶଟାକୁ ଦୁହେଁ ମିଳି ଏକ ମୁହୂର୍ତ୍ତିରେ ଅବିଷ୍କାର କରି ନେବେ । ଦୁହିଁଙ୍କ ଦୌଡ଼ିବାର ଭଙ୍ଗୀରେ ବିଶେଷ ପାର୍ଥକ୍ୟ ଓ ସୌନ୍ଦର୍ଯ୍ୟକଳା ନିହିତ ଅଛି । ଟୋଗ୍ରି ଯେତେବେଳେ ଦୌଡ଼େ, ସେତେବେଳେ ଗୋଟିଏ ଲମ୍ବମାନ କ୍ଷୀଣସୂତ୍ର ଭୂମିରେ ମିଶିଗଲା ପରି ମନେହୁଏ । ସେତେବେଳେ ତାର ଚକ୍ଷୁ, କର୍ଣ୍ଣ, ପାଦ, ମୁଖ ଇତ୍ୟାଦି ଚିହ୍ନିବାର ଉପାୟ ନାହିଁ । କିନ୍ତୁ ଜଲିର ଦୌଡ଼ରେ ଭଙ୍ଗିମା ଭିନ୍ନ ଧରଣର । ସେ ଯେପରି ପାଗଳିସ୍ ଡାନ୍ସ । ଦୌଡ଼ି ଯେପରି ତାର ତାଳ ଲାଗୁନାହିଁ—କେବଳ ଶୂନ୍ୟେ ଶୂନ୍ୟେ ନାଚି ନାଚି ଯାଉଛି ।

ଦୁଇଟି ପଶୁ ଜମିଦାର ବାବୁଙ୍କର ବଡ଼ ପ୍ରିୟବସ୍ତୁ ଥିଲେ । ଟୋଗ୍ରି ତ ବିଲାତ ବିଖ୍ୟାତ ବୋଲି ତାର ଇଂରାଜୀ ନାମ ରଖାଯାଇ ଥିଲା, ଜଲିକୁ ତାର ଅତ୍ୟନ୍ତ ପ୍ରିୟ ଦେଖି ତାକୁ ମଧ୍ୟ ସେହି ଭାଷାରେ ଅନ୍ୟ ଗୋଟିଏ ନାମରେ ଅଭିହିତ କରାଯାଇଥିଲା । କର୍ମକ୍ଳାନ୍ତ ଦିବସ ପରେ ଜମିଦାର ବାବୁ ଯେତେବେଳେ କଟେଜ ସମ୍ମୁଖସ୍ଥ ପ୍ରକାଣ୍ଡ ପଡ଼ିଆରେ ସାୟଂଭ୍ରମଣ ଉଦ୍ଦେଶ୍ୟରେ ବାହାରନ୍ତି, ସେତେବେଳେ ଏ ଦୁଇଟି ପଶୁ ତାଙ୍କର ସହଚର ହୋଇ ଚାଲିବାରେ ଏବଂ ତାଙ୍କ ସମ୍ମୁଖରେ କ୍ରୀଡ଼ାକୌତୁକ କରିବାରେ ତାଙ୍କ ଶ୍ରାନ୍ତ ଅନ୍ତରରେ ଯେ ଆନନ୍ଦ ସଞ୍ଚାର କରନ୍ତି ତାହାର ମୂଲ୍ୟ ସାମାନ୍ୟ ନୁହେଁ । ତାହା ନ ହେଲେ ଶିକାରସ୍ଥଳୀରେ ଟୋଗ୍ରିର କିଛି ଆବଶ୍ୟକତା ଅଛି, ଜଲି ତ ସମ୍ପୂର୍ଣ୍ଣ ଅନାବଶ୍ୟକ ।

Digitized by srujanika@gmail.com

ତଥାପି ଜମିଦାର ବାବୁଙ୍କର କର୍ମପ୍ରବାହ ମଧ୍ୟରେ ଇଲ୍‌ର ଟିକିଏ ସ୍ଥାନ ଅଛି । ସେହି ଅନନ୍ଦଟିକର କାରଣ ସେ ।

ଜମିଦାର ବାବୁ ଗସ୍ତରେ ଯେତେବେଳେ ବାହାରନ୍ତି, ଇଲ୍ ତାଙ୍କ ହାତ ଚାଟି ଚାଟି ଗୋଡ଼ରେ ଘଷି ହୋଇ ଚାଲେ । ଡୋଗ୍ କେତେବେଳେ ପଛରେ ରହିଗଲେ ଛୁଟି ଆସି ତାଙ୍କ ସମ୍ମୁଖରେ ନମସ୍କାର ଛଳରେ କରଯୋଡ଼ି ହୋଇ ବସିପଡ଼ି ଲାଙ୍ଗୁଳ ହଲାଏ । କେତେବେଳେ ତାଙ୍କ ଦୁଇ ପାଦ ମଧ୍ୟରେ ପ୍ରବେଶ କରି ଗତି ଶିଥିଳ କରିଦିଏ । ଅନ୍ୟ କୌଣସି କୁକୁର ଯେବେ ଆସି ଇଲ୍ ଉପରେ ଲୋଲୁପଦୃଷ୍ଟି ପକାଏ, ଇଲ୍ ସନ୍ତ୍ରସ୍ତ କାତର ହୋଇ ବାବୁଙ୍କ ଦୁଇପାଦ ମଧ୍ୟରେ ଠେଲି ଠେଲି ପ୍ରବେଶ କରେ । ଡୋଗ୍ କାଷ୍ଟି ପାରି ସଙ୍ଗେ ସଙ୍ଗେ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ଦେଖା ଦେବା ମାତ୍ରକେ ତାର ସ୍ୱଜାତିମାନେ ପୃଷ୍ଠପ୍ରଦର୍ଶନ କରି ବିନୀତ ଭାବରେ ଅପସାରିତ ହୁଅନ୍ତି । କାରଣ ଡୋଗ୍‌ର ବଳବୀର୍ଯ୍ୟ, ତାର ଦନ୍ତଶ୍ରେଣୀମାନଙ୍କ ଅଜ୍ଞାତ ନ ଥିଲା । ଅଜ ମଧ୍ୟ ଡୋଗ୍‌ର ପଦମର୍ଯ୍ୟାଦା ଜନସାଧାରଣ କୁକୁରଙ୍କଠାରୁ ଯଥେଷ୍ଟ ପରିମାଣରେ ଅଧିକ । ସେହି ପୃଷ୍ଠଭଙ୍ଗ ହେଲେ ତାର ଅନୁସରଣ କରି ନିଜର ବୀରତା ସେ ପ୍ରଦର୍ଶନ କରୁ ନ ଥିଲା ।

ଜମିଦାର ବାବୁଙ୍କର ଶିକ୍ଷା ଶମ୍ଭୁପୁରଠାରେ ହିଁ ସମାପ୍ତ ହୋଇଅଛି । ବେଶ୍ ଆଧୁନିକ ଧରଣର ଲୋକ; ମିଷ୍ଟାଳାପ, ଶିଷ୍ଟାଚାର ଇତ୍ୟାଦି ଗୁଣର ଅଭାବ ନ ଥିଲା । ଦେଶୀ ଲୋକଙ୍କ ପାଖରେ ଚୁଡ଼ିଦାରପଟା ଖାଣ୍ଟି ଦେଶୀ ଓ ବିଲାତୀଙ୍କ ପାଖରେ ପୂରା ସାହେବ । ଅବସର ସମୟରେ ବଡ଼ ବଡ଼ ସାହେବ ସୁବା ଶିକାର ଉଦ୍ଦେଶ୍ୟରେ ଜମିଦାର-ଭବନରେ ଆତିଥ୍ୟ ଗ୍ରହଣ କରିଥାନ୍ତି । ସେମାନଙ୍କ

Digitized by srujanika@gmail.com

ଜ୍ମିଦାରୀରେ ମଧ୍ୟ ବେଶ୍ ଅଣ୍ଟାଜନରେ ଅତଥିଶାଳା ନିର୍ମାଣ କରିଯାଇଅଛି । କେବଳ ଜଲ୍ ଓ ଟୋନ୍ ତାଙ୍କର ପୋଷା ନ ଥିଲେ । ଏ ବାଦ୍ କେତେ ଜାତିର ପକ୍ଷୀ, ମର୍କଟ, ଭଲ୍ଲୁକ, ମତ୍ସ୍ୟ ଇତ୍ୟାଦି କେତେ ଜୀବ ଜମିଦାର ବାବୁଙ୍କ ଅନ୍ଦରେ ପ୍ରତିପୋଷିତ ହେଉଥିଲେ । କହିବାକୁ ଗଲେ ଜମିଦାର-ଭବନରେ ଗୋଟିଏ ଛୋଟ ଧରଣର ଚିଡ଼ିଆଖାନା ଥିଲା ।

କିନ୍ତୁ ଟୋନ୍ ଓ ଜଲ୍ ତାଙ୍କର ପାର୍ଶ୍ୱଚର । ବିଶେଷତଃ ତାଙ୍କର ଅତି ସ୍ନେହର ଏକମାତ୍ର କନ୍ୟାଟି ଜଲ୍ ଓ ଟୋନ୍‌ର ଅନ୍ୟତମ ସଙ୍ଗୀ ଥିଲା । ତାର ଅଧିକାଂଶ ସମୟ ସେ ଏ ଦୁହିଙ୍କୁ ନେଇ ଥାଏ । ବଗିଚାରେ ଧାଈର ତତ୍ତ୍ୱାବଧାନରେ ସେ ଯେତେବେଳେ କଅଁଳ ଘାସ ଛିଣ୍ଡାଏ, ଜଲ୍ ଜାଣି ପାରି ତା ମୁହଁ ପାଖରେ ନିଜ ମୁହଁଟି ନେଇ ରଖେ । ଟୋନ୍ ଦୌଡ଼ି ଆସି ତାର ଏହି ଛୋଟ ଖାମିଦାଣୀ ପାଖରେ କେତେ ଗେଲ୍ କୌତୁକର ଅଭିନୟ କରେ । ଖାମିଦାଣୀ, 'ତୁ ଖାଇବୁ' 'ତୁ ଖାଇବୁ' କହି ତା ମୁହଁରେ ଘାସ ଗୁଞ୍ଜି ଦିଅନ୍ତି । ସେ ଅମାନ୍ୟ ନ କରି ମୁଖରେ ତାହା ଧରି ସ୍ୱୀୟ ବାଧ୍ୟତା ଜ୍ଞାପନ କରେ । ବାରଣ୍ଡା ଇଜି ଚେୟାରରେ ବସି ଏ ସବୁ ନିରୀକ୍ଷଣ କରି ବାବୁଙ୍କ ଚିତ୍ତ ଉତ୍‌ଫୁଲ୍ଲ ହୋଇ ଉଠେ ।

ଜମିଦାର ବାବୁ ସାହେବମାନଙ୍କ ସହିତ ଯେତେ ମିଳାମିଶା କରନ୍ତୁ, ଦେଶୀ ଲୋକମାନଙ୍କ ପ୍ରତି ଯେ ତାଙ୍କର ଅବଜ୍ଞା ଅଥବା ଘୃଣା ଥିଲା, ଏହା କୋଲହଯାଇ ନ ପାରେ । ଦେଶର କୌଣସି ପଦସ୍ଥ ବ୍ୟକ୍ତି ତାଙ୍କର ଦ୍ୱାରସ୍ଥହେଲେ ତାଙ୍କର ସମ୍ମାନ-ଅଭ୍ୟ-ର୍ଥନାରେ କୌଣସି ତ୍ରୁଟି ହେଉ ନ ଥିଲା । ପ୍ରଜାମାନଙ୍କ ମଧ୍ୟରେ

Digitized by srujanika@gmail.com

ମଧ୍ୟ ଶିକ୍ଷିତ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ପ୍ରତି ଯଥାଯୋଗ୍ୟ ସମ୍ମାନ ଦେଖା-ଯାଉଥିଲା । ତଥାପି ଲୋକମତ ତାଙ୍କ ସ୍ୱାର୍ଥଗତରେ ଅନୁକୂଳରେ ନ ଥିଲା । ବୁଢ଼ା ବୁଢ଼ା ଲୋକେ ତାଙ୍କୁ ଭ୍ରଷ୍ଟ, ସ୍ୱଧର୍ମତ୍ୟାଗୀ କହୁଥିଲେ । ଆଉ କେହି କେହି ବହୁବ୍ୟୟୀ, ପ୍ରଜାପୀଡ଼କ କହୁଥିଲେ । ଦେଶଚକ୍ଷୁରେ ତାଙ୍କର ପ୍ରଧାନ ଦୋଷ, ସେ ବିଦେଶୀୟମାନଙ୍କ ସହିତ ମିଶିଲେ ଏବଂ ସେହିମାନଙ୍କ ଆଚାର ଗ୍ରହଣ କଲେ । ଯଥାର୍ଥରେ ତାଙ୍କର ଆହାର ପରିଚ୍ଛଦରେ ବିଜାତୀୟ ଭାବ ଅନେକ ପରିମାଣରେ ଲକ୍ଷିତ ହେଉଥିଲା । ସେ ସବୁରେ ଯେତିକି ସଂଯମ ଆବଶ୍ୟକ ସେ ତାର ସମ୍ପୂର୍ଣ୍ଣ ଅବହେଳା କରୁଥିଲେ ।

ଏଥର ଶୀତ ଛୁଟିରେ ପୋଲିସ ବିଭାଗର ଡି. ଆଇ. ଜି. ସାହେବ ଶିକାର ଉଦ୍ଦେଶ୍ୟରେ ଜମିଦାର ଭବନରେ ଆତିଥ୍ୟ ଗ୍ରହଣ କରିବେ ବୋଲି ଲେଖି ପଠାଇଛନ୍ତି । ତାଙ୍କ ସହିତ ତାଙ୍କର ସ୍ତ୍ରୀ, ପୁତ୍ର ଓ କନ୍ୟା ଆସିଲେ । ଡି. ଆଇ. ଜି. ସାହେବଙ୍କ ସହିତ ଜମିଦାର ବାବୁଙ୍କର ବନ୍ଧୁତା ବହୁଦିନର । ଏଥର ପୁଣି ସଙ୍ଗରେ ସ୍ତ୍ରୀ, କନ୍ୟା ଆସୁଛନ୍ତି । ପୂର୍ବଦିନ ଆଗରୁ ଅତିଥିଶାଳା ପରିଷ୍କୃତ ହୋଇ ସଜାସଜ ଲାଗିଛି ଏବଂ ଯେଉଁ ସ୍ଥାନରେ ହରିଣ ଓ ପକ୍ଷୀ ପ୍ରଭୃତି ଶିକାର କରିବାର କଥା ସେ ସ୍ଥଳରେ ତମ୍ବୁ ପ୍ରଭୃତିର ଆୟୋଜନ ଚାଲିଛି । ଆବଶ୍ୟକ ଜିନିଷ କିଣିବାଲାଗି କଟକକୁ ଲୋକ ପଠାଯାଉଅଛି । ଚାକର, ବେଠିଆ ଓ ଅମଲା ପ୍ରଭୃତି ବ୍ୟତିବ୍ୟସ୍ତ ହୋଇ ଲାଗି ପଡ଼ିଛନ୍ତି । ସବୁଥର ପରି ଏଥର କାହାରିକି ମରିବାକୁ ତର ନାହିଁ । ସବୁଥର ପରି ଏଥର ମଧ୍ୟ ଜମିଦାର ବାବୁଙ୍କ ପଶ୍ଚାତ୍‌ରେ ଗାଳି ବର୍ଷଣ କରୁଛନ୍ତି ।

ସାହେବଙ୍କ ଆସିବା ସମୟକୁ ତାଙ୍କୁ ବାଟରୁ ସଙ୍ଗୋଳି ଆଣିବାଲାଗି ଜମିଦାର ବାବୁ ଖଣ୍ଡେଶ୍ୱର ମଠରରେ ଗଲେ ।

Digitized by srujanika@gmail.com

ନିର୍ଦ୍ଦିଷ୍ଟ ସମୟରେ ସାହେବ ପହଞ୍ଚି ଗଲେ । ତାଙ୍କର ସ୍ତ୍ରୀ, କନ୍ୟାମାନଙ୍କ ସହିତ ଯୋଗଦେଇ ଜମିଦାର ବାବୁଙ୍କ ମନପ୍ରାଣ ଅପ୍ଳୁତ ହୋଇ ଉଠିଲା । ଜମିଦାର ଭବନରେ ମହା ଚାଞ୍ଚଲ୍ୟ, କାହାର ଦଣ୍ଡେ ସ୍ଥିର ହୋଇ ରହିବାର ସମୟ ନାହିଁ । ସମସ୍ତେ ଦୌଡ଼ଧାପଡ଼ କରୁଛନ୍ତି । ଅତିଥିମାନଙ୍କ ସହିତ ଠିକ୍ କରାଗଲା, ଆଜି ଅତିଥିଶାଳାରେ ରହି ପରଦିନ ପ୍ରାତଃଭୋଜନ ପରେ ଶିକାରସ୍ଥଳୀକୁ ଯାତ୍ରା କରିବାକୁ ହେବ ।

ଶିକାରସ୍ଥଳୀ ଜମିଦାର-ଭବନରୁ ବାର ଚୌଦ ମାଇଲ୍ ରାସ୍ତା, ନିପଟ ଜଙ୍ଗଲ୍ ମଧ୍ୟରେ, ଘର ଗାଁ ପାଖରେ ନାହିଁ । ଚାକର, ଖାନସମା, ବେଠିଆ ପ୍ରଭୃତି ଆଗରୁ ସବୁ ଜିନିଷପତ୍ର ନେଇ ଚାଲିଲେ । ପଛରେ ସାହେବ ପରିବାର, ଜମିଦାର ବାବୁ, ସାହେବଙ୍କର ଦୁଇଟା ଶିକାରି କୁକୁର ଏବଂ ଜମିଦାର ବାବୁଙ୍କର ଡୋରା ଓ ଜଲି ମଟର ଅରୋହଣ କରି ଚାଲିଲେ । ଜଲିର ଯିବା ଅନାବଶ୍ୟକ ହେଲେହେଁ ଡୋରା ତାକୁ ଛାଡ଼ି କୌଣସି ସ୍ଥାନରେ ରହିବ ନାହିଁ । ଯେଉଁ ଦେଶକୁ ନିଅଯାଉ, ସୁଯୋଗ ପାଇଲେ ଆସି ତା ନିକଟରେ ହାଜର ହେବ । ସୁତରାଂ ଜଲିକୁ ମଧ୍ୟ ସଙ୍ଗରେ ନେବାକୁ ହେଲା । ସେଥିପାଇଁ ଅବଶ୍ୟ ଜ୍ୟେଷ୍ଠ ଜମିଦାଣୀଙ୍କର ଅନୁମତି ନିଆଯାଇଅଛି । ତାଙ୍କର ହୁକୁମ ହୋଇଛି, ଦୁଇ ଦିନରୁ ଅଧିକ କାଳ ଡୋରା ଓ ଜଲିକୁ ଯେପରି ଅଟକା ନ ଯାଏ ।

କିନ୍ତୁ "ମେରି କ୍ରିସ୍ମସ୍"ର ଆନନ୍ଦ ଉତ୍ସାହରେ ଶିକାର ସ୍ଥଳୀରେ ରହିବାର ଆଜି ପାଞ୍ଚ ଦିନ ହୋଇଗଲା । ସେହି ଜଙ୍ଗଲ୍ ଜାଗାଟାରେ ସାହେବଙ୍କର ମନୋମତ ସବୁ ଜିନିଷ ଏପରି ଭାବରେ ଯୋଗାଯାଉଛି ଯେ, ତାଙ୍କର ଅସୁବିଧା ହେବା ଦୂରେଥାଉ,

Digitized by srujanika@gmail.com

ସହରର କୋଳାହଳକ୍ଲାନ୍ତ ଜୀବନରେ ଏହି ନିର୍ଜନ ବନବାସ ଦ୍ୱାରା ସେମାନଙ୍କର ଖୁବ୍ ଆନନ୍ଦ ଜନ୍ମିଛି । ସୁତରାଂ ଦୁଇଦିନ ପାଇଁ ଆଉ ଅଳ୍ପ ପାଞ୍ଚଦିନ ହୋଇଗଲା; ସାହେବଙ୍କର ଫେରିବା ପାଇଁ କୌଣସି ଉଦ୍‌ବେଗ ନାହିଁ । ଆଜି କିନ୍ତୁ ସବୁ ଜିନିଷପତ୍ର ନିଃଶେଷ ହୋଇ ଆସିଅଛି । କାଲି ପ୍ରାତଃରୁ ଫେରିବା କଥା ।

ମଧ୍ୟାହ୍ନ ଭୋଜନ କରି ସାହେବଙ୍କ ସହ ଜମିଦାର ବାବୁ ଶିକାର ଉଦ୍ଦେଶ୍ୟରେ ବାହାରିଲେ । ଗତ ଚାରିଦିନ ସାହେବଙ୍କର ସ୍ତ୍ରୀ, କନ୍ୟାମାନେ ଖେଳ କୌତୁକ, ନୃତ୍ୟ ଗୀତ ଅବାଧ ଉପଭୋଗ କରି ଯାଇଛନ୍ତି । ଆଜି ଆଉ ସେମାନେ ଶିକାରର ସହଯାତ୍ରୀ ହୋଇ ପାରିଲେ ନାହିଁ । ନିରୀହ ଚାକର ବେଠିଆଗୁଡ଼ିକ ଗୋଟିଏ ବାଘୁଡ଼ି ପିଲ ନ ମାରି ମଧ୍ୟ କେବଳ ଟିକିଏ ଶିକାରରେ ସାହାଯ୍ୟ କରିବାରେ ଧଇଁଇ ପଡ଼ୁଛନ୍ତି । ତଥାପି ସେମାନଙ୍କ ମଧ୍ୟରୁ ଦୁଇ ତିନି ଜଣଙ୍କୁ ଯିବାକୁ ହେଲା । ପକ୍ଷୀ ମାରିବାରେ ଥରେ ଦୁଇଥର ଲକ୍ଷ୍ୟଭ୍ରଷ୍ଟ ହେବାରୁ ଆଉ ମାରିବା ଅସମ୍ଭବ ହୋଇ ପଡ଼ିଲା । ପକ୍ଷୀମାନଙ୍କୁ ପୁନଶ୍ଚ ଆସି ବସିବାକୁ ଅବସର ଦେବା ଉଦ୍ଦେଶ୍ୟରେ ଏବଂ ସେ ସମୟଟା ହରିଣ ପ୍ରଭୃତି ଅନୁସନ୍ଧାନ କରିବା ଲାଗି ଶିକାରୀଦ୍ୱୟ ନିକଟବର୍ତ୍ତୀ ଜଙ୍ଗଲ ମଧ୍ୟକୁ ବାହାରିଲେ । ନାନା ଢଗରେ ଭ୍ରମି କୌଣସିଠାରେ କିଛି ସନ୍ଧାନ କରି ପାରିଲେ ନାହିଁ । ଚାକର ତନୋଟା ହରିଣ ଦେଖିବାକୁ ଜଙ୍ଗଲକୁ ପଠାଗଲେ । କେଉଁଠାରେ ବସି ପିକା ଟାଣିଲେ କି ଗୁଣ୍ଡିପତ୍ର ମକଚି ଖୁସିଗପ କଲେ, ତାହା ଦେଖିବାର ତ ଉପାୟ ନାହିଁ । ଶିକାରୀ ଦୁଇଜଣ ନିଃଶବ୍ଦ ପଦକ୍ଷେପରେ ଏ ଜଙ୍ଗଲ, ସେ ଜଙ୍ଗଲ ଖୋଜିବାକୁ ଲାଗିଲେ । ତମ୍ବୁ ନିକଟରୁ ତିନି ଚାରି ମାଇଲ ଦୂରରେ ଯାଇ ପଡ଼ିଛନ୍ତି ବୋଲି ତାହାର ଭ୍ରୂକ୍ଷେପ ନାହିଁ ।

Digitized by srujanika@gmail.com

ସେତେବେଳକୁ ବେଳ ବୁଡ଼ବୁଡ଼ ହୋଇ ଆସୁଛି । ନିକଟବର୍ତ୍ତୀ ପାହାଡ଼ ଉହାଡ଼ରେ ସୂର୍ଯ୍ୟ ଲୁଚି ଯାଉଛି; କିନ୍ତୁ ତାର ରକ୍ତିମ ଆଭା ପଶ୍ଚିମ ଆକାଶରେ ଖେଳେଇ ପଡ଼ୁଛି । ଶିକାରୀଦ୍ୱୟ ଜୀବ ଦେହର ତାଜାରକ୍ତ ଦେଖିବାର ଅଭିଳାଷୀ, ଏ ଦିଗରେ ନଜର ନାହିଁ । ତେଣେ କିନ୍ତୁ ପୂର୍ବଦିଗ ମେଘାଚ୍ଛନ୍ନ କରି ଅନ୍ଧାର ଘୋଟି ଆସିଲାଣି । ପୃଥିବୀ ଉପରେ ଏମାନଙ୍କର ଦୃଷ୍ଟି, ଆକାଶ ସହିତ ସମ୍ପର୍କ କଣ ? ଚାକର ତିନିଜଣ ଏ ଦୁର୍ଯୋଗ ଦେଖି ହସ ଖୁସିରୁ ବିରତ ହୋଇ ଶିକାରୀଙ୍କ ଅନ୍ୱେଷଣରେ ବାହାରିଲେ । ଗଭୀର ଜଙ୍ଗଲରେ ଦିବସରେ ମଧ୍ୟ ସେମାନଙ୍କୁ ଖୋଜି ପାଇବା ଅସମ୍ଭବ । ଅନ୍ଧାରରେ ଶିକାରୀଦ୍ୱୟ ଏକାବେଳେ ଦୁଷ୍ପ୍ରାପ୍ୟ ହୋଇ ଉଠିଲେ ।

ଭରା ବୃଷ୍ଟିର ଶୀତ ପବନ ଯେତେବେଳେ ଦେହରେ ଲାଗିଲା, ଶିକାରୀ ଦ୍ୱୟ ଫେରି ଚାହିଁଲେ ଅକସ୍ମାତ୍ ବୃଷ୍ଟିର ଆୟୋଜନ । ତମ୍ବୁ ନିକଟରୁ ତିନି ଚାରି ମାଇଲ ଦୂରବର୍ତ୍ତୀ ହୋଇ ପଡ଼ିଛନ୍ତି । ସୁତରାଂ ବର୍ଷା ପୂର୍ବରୁ ତମ୍ବୁ ଧରିବା ଅସମ୍ଭବ । ଅଗତ୍ୟା ବନ୍ଧୁକ-ସ୍କନ୍ଧ ହୋଇ ଦୁଇ ବନ୍ଧୁ ମିଲିଟାରୀ ଡବଲ ମାର୍ଚ୍ଚ ଆରମ୍ଭ କରିଦେଲେ । ଗୁଳି ସମ୍ମୁଖରେ ମୃଗର ତ୍ରସ୍ତଭାବର ପଳାୟନ ଏବଂ ଶିକାରୀର ଆହ୍ଲାଦଧ୍ୱନି ଓ ଅନୁଧାବନ ଏ ସମୟରେ ସେମାନଙ୍କର ଅନୁଭୂତ ହେଉନାହିଁ । କିନ୍ତୁ ଠିକ୍ ସେହିପରି ହୁ ହୁ ଆନନ୍ଦଧ୍ୱନି କରି ମେଘ ସେମାନଙ୍କୁ ଆକ୍ରମଣ କଲା । କୌଣସି ଦିଗରେ ନିକଟରେ ଆଶ୍ରୟ ନାହିଁ । ଚତୁର୍ଦ୍ଦିଗ ଅନ୍ଧକାରାଚ୍ଛନ୍ନ, ଘୂର୍ଣ୍ଣିବାୟୁ ସନ୍ନିକଟ ଅରଣ୍ୟାନୀ ମଧ୍ୟରେ ମହାକ୍ରନ୍ଦନରୋଳ ଉପୁଜାଇ ଦେଲା । ଅତି କଷ୍ଟରେ ସନ୍ତର୍ପଣରେ ଦୁଇଜଣ ବାଟ ଖୋଜି ଖୋଜି ଚାଲିଲେ । ପରିଚ୍ଛଦ ସବୁ ଓଦା ହୋଇ ଚାରିମହଣ ଭାରି ହୋଇଗଲା । ଦୀର୍ଘନିଶ୍ୱାସ ଛାଡ଼ି ତମ୍ବୁରେ ପହଞ୍ଚିଲାବେଳକୁ ରାତି ଆଠଟା ।

Digitized by srujanika@gmail.com

ନୈଶ ଭୋଜନର କୌଣସି ବନ୍ଦୋବସ୍ତ ନାହିଁ, ତାହାହିଁ ବର୍ତ୍ତମାନ ବିଶେଷ ଭାବନାର ବିଷୟ ହୋଇପଡ଼ିଲା । ଶିକାର ତ କିଛି ହେଲା ନାହିଁ । ଅଜି ମଧ୍ୟ ପରଦିନ ପ୍ରାତଃରୁ ଏ ସ୍ଥାନ ଛାଡ଼ିବାର ବିଧି ଥିବାରୁ ଏବଂ ଶିକାର ପାଇବା ବିଷୟରେ କୌଣସି ସନ୍ଦେହ ନ ଥିବାରୁ ପୂର୍ବରୁ ନୈଶଭୋଜନପାଇଁ କୌଣସି ଅୟୋଜନ କରାଯାଇ ନ ଥିଲା । ବର୍ତ୍ତମାନ ଅଉ ଉପାୟ ନାହିଁ । ଜମିଦାରଙ୍କ ଡ଼ଅସ ଏଠାରୁ ବାର ଚୌଦ ମାଇଲ ଦୂର । ଏ ବର୍ଷାରେ ପୁଣି ସେ ସ୍ଥାନକୁ ଯାଇ ରାତି ଭିତରେ ଖାଦ୍ୟଦ୍ରବ୍ୟ ଅଣିବା କି ସମ୍ଭବ । ମଟର ରାସ୍ତା ତ ବର୍ଷାଜଳରେ ଅଗମ୍ୟ ହୋଇପଡ଼ିଥିବ । ନିକଟବର୍ତ୍ତୀ ସେପରି କୌଣସି ଜନସ୍ଥାନ ନାହିଁ, ଯେଉଁଠାରେ ସାହେବ ଓ ଜମିଦାର ବାବୁଙ୍କ ଅାହାରୋପଯୋଗୀ କିଛି ହେଲେ ମିଳିବ; ମାଂସ ନ ହେଲେ ତେ ଅନାହାର । ଅଜି ପୁଣି ଏକେ ବିପଦ ସହ୍ୟ କରାଯାଇଛି । ସମସ୍ତଙ୍କର ଭାବନା ପଡ଼ିଗଲା । ଜମିଦାର ବାବୁଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କଲେହେଁ ସାହେବଙ୍କର ମଧ୍ୟ ଭାବନା ପଡ଼ିଲା । କାରଣ ଶିକାର କରିବାକୁ ଯିବାବେଳେ ଜମିଦାର ବାବୁ ଲୋକ ପଠାଇ ମାଂସର ଅୟୋଜନ କରିବାକୁ ଯାଉଥିଲେ । ସାହେବ କିନ୍ତୁ ଶିକାର ନିଶ୍ଚୟ ମିଳିବ କହି ତାଙ୍କୁ ସେ ସବୁ ଅୟୋଜନରୁ ନିବୃତ୍ତ କରିଥିଲେ । କରାଯାଏ କଣ ? ଜମିଦାର ବାବୁ ଅଯଥା ବେଟିଅ ଗୃହର ଗୁଡ଼ାଙ୍କ ଉପରେ କ୍ରୁଦ୍ଧ ହେଲେ ।

ଏସବୁ ଦେଖି ସାହେବ ଟିକିଏ ମୁରୁକି ହସା ଦେଇ କହିଲେ, 'Well, let me devise some means of the dinner' (ଅଚ୍ଛା, ରହି ଭୋଜନର ଗୋଟାଏ ବ୍ୟବସ୍ଥା କରାଯାଉ ।)

ଜମିଦାର ବାବୁ ସେହି ହାସ୍ୟର ଉତ୍ତର ହାସ୍ୟରେ ପ୍ରଦାନ କରି କହିଲେ, 'Well ?'

Digitized by srujanika@gmail.com

ସାହେବ କହିଲେ, "Won't you mind spare your heart ? It will make a sumptuous feast and you can have a lot of them from the jungles. Don't you like the idea ?" (ଆପଣଙ୍କର ହୃଦୟଟିକୁ ଦେବାକୁ କିଛି ଆପତ୍ତି ଅଛି କି ? ଏହା ବେଶ୍ ସୁନ୍ଦର ଆହାର ହେବ ଏବଂ ଜଙ୍ଗଲରୁ ଆପଣ ସେଥିରୁ ଅନେକ ପାଇ ପାରିବେ । କିପରି ? କଥାଟା ଭଲ ଲାଗୁ ନାହିଁ ? )

ଜମିଦାର ବାବୁ କଣ ଭାବୁଥିଲେ । ସାହେବଙ୍କ ବାକ୍ୟ ଶେଷ ହେବାର ଦେଖି ହଠାତ୍ ଚମକି ପଡ଼ି ଉତ୍ତର ଦେଲେ, "Oh yes, it's a fine idea" (ଠିକ୍ କହୁଛନ୍ତି) । ଜମିଦାର ବାବୁ ସମ୍ଭ୍ରାନ୍ତ ବନ୍ଧୁ ଓ ଅତିଥିଙ୍କ କଥାରେ ଅମତ ହୋଇ ପାରିଲେ ନାହିଁ; କିନ୍ତୁ କଲି କଥା ଶୁଣି ତାଙ୍କ ହୃଦୟଟା କାହିଁକି ଦପ୍ କରି ପଡ଼ିଗଲା । କଲିପ୍ରତି ତାଙ୍କର ଟିକିଏ ବିଶେଷ ମମତା ଜନ୍ମିବାର କାରଣ ଅଛି । ଦିନେ ଅନ୍ୟ ଏକ ବିଦେଶୀୟ ବନ୍ଧୁଙ୍କ ସମକ୍ଷରେ ନିଜ ଶିକାର କୌଶଳର ତାରିଫ ଦେଖାଇବାକୁ ଯାଇ ସେ କଲିକୁ ପାଇଥିଲେ । ସେତେବେଳେ ତାର ମା ତାକୁ ସ୍ତନ୍ୟପାନ କରାଉଥିଲା । ଜମିଦାର ବାବୁଙ୍କ ଗୁଳି ବସି ମାଆଟି ଢଳି ପଡ଼ିଲା; କିନ୍ତୁ ନିର୍ବୋଧ ଶିଶୁ ନିର୍ଭୟରେ ଠିଆ ହୋଇ ରହିଲା । ଜମିଦାର ବାବୁଙ୍କ ଲୋକ ଯେତେବେଳେ ତାକୁ ଧରିବାକୁ ଗଲେ, ମା ନିକଟରେ ଅଛି ବୋଲି ସେ ନିଃଶଙ୍କଭାବରେ ଦଣ୍ଡାୟମାନ ରହିଲା । ବିଦେଶୀୟ ବନ୍ଧୁଙ୍କଠାରୁ ଏହି ଶିକାର କୌଶଳରେ ଯଥେଷ୍ଟ ବାହାବା ପାଇଲେ ହେଁ ଏହି କ୍ଷୁଦ୍ର ଶିଶୁର ନିର୍ବୋଧ ଅଶ୍ରୁ ଦୃଷ୍ଟିକି ଚାହିଁ ତାର ମାତୃହନ୍ତା ଜମିଦାର ବାବୁଙ୍କର ତା ପ୍ରତି ସେହିଦିନୁ ଗୋଟାଏ କିପରି ବାତ୍ସଲ୍ୟ ଓ ଶ୍ରଦ୍ଧା ଜନ୍ମି ଯାଇଥିଲା ।

Digitized by srujanika@gmail.com

କଲ୍‌କୁ ହତ୍ୟା କରି ଦିନେ ତାର ମାଂସ ଭକ୍ଷଣ କରିବାକୁ ହେବ, ଏକଥା ସେ କେବେ କଳ୍ପନା କରି ପାରି ନ ଥିଲେ । ବର୍ତ୍ତମାନ ସେହି ପରାମର୍ଶ ଶୁଣି ଜମିଦାର ବାବୁଙ୍କ ଶିକାରୀ ଅନ୍ତର ମଧ୍ୟ କପରି ଚିକାଏ ଦବିଗଲା । ତାହା ବୋଲି ଏତେ ବଡ଼ ସମ୍ଭ୍ରାନ୍ତ ଅତିଥିଙ୍କ କଣ ନାହିଁ କରି ଦିଆଯାଇ ପାରେ ? ଜମିଦାର ବାବୁଙ୍କର ସମ୍ମତି ପାଇ ସାହେବ ମହାନନ୍ଦରେ ନିଜେ କାଟିବାକୁ ଉଦ୍ୟତ ହେଲେ । ନିଜ ହାତରେ କିଛି ହେଲେ ଶିକାର ନ କଲେ ସେଦିନ ତାଙ୍କ ମନଟା ଭଲ ରହେନାହିଁ । ଯୁଦ୍ଧରେ ବହୁତ ଲୋକଙ୍କର ପ୍ରାଣ କ୍ଷୟ କରିଥିଲେ ବୋଲି ତାଙ୍କର ବଡ଼ ସୁଖ୍ୟାତି ଅଛି । ଶୁଣାଯାଏ କୌଣସି ଦିନ ଶିକାର ନ ମିଳିଲେ ସେହି ଉଦ୍ଦେଶ୍ୟରେ ପାଳିତ କୁକ୍‌କୁଟ ପ୍ରଭୃତି ଗୋଟାଏ କିଛି ଜୀବ ବଧ କଲେ ତାଙ୍କ ମସ୍ତିଷ୍କ ଥଣ୍ଡା ରହେ । ଏହି ଅଭ୍ୟାସକୁ ତାରିଫ୍ କରି ତାଙ୍କ ସ୍ତ୍ରୀ କୁଅଡ଼େ ବହୁବାର କହିଥାନ୍ତି ଯେ ଦିନେ କିଛି ଶିକାର କରିବାକୁ ନ ପାଇ ସାହେବ ନିଜର ବେକ କାଟିବାକୁ ଉଦ୍ୟତ ହେଉଥିଲେ ।

ଜଲି ଓ ଜୋଗି ଏକ ଅପରର କୋଳରେ ମୁହଁ ଗୁଞ୍ଜି ଦେଇ ମହା ଆରାମରେ ନିଦ୍ରା ଯାଇଛନ୍ତି । ସେ ସମୟରେ ଅପରିଚିତ କୌଣସି ଲୋକ ଜୋଗି ନିକଟକୁ ଯିବାକୁ ସାହସ କରିବା ବଡ଼ ଦୁରୂହ । ବିଶେଷତଃ ଜୋଗି ଓ ଜଲି ଏକ ସଙ୍ଗରେ ଥିବାବେଳେ ଜମିଦାର ବାବୁଙ୍କ ମାଧିଆ ଗୃହର ବ୍ୟତୀତ ଅନ୍ୟ କାହାରି ସେମାନଙ୍କ ପାଖ ପଶିବାକୁ ଉପାୟ ନାହିଁ । ଜମିଦାର ବାବୁଙ୍କ ଇଙ୍ଗିତରେ ଜଲିକୁ ଆଣିବା ଲାଗି ମାଧିଆକୁ ଯିବାକୁ ହେଲା । ତାର ପଦଶବ୍ଦ ଶୁଣି ଜୋଗି ଚେଇଁ ଉଠି ଭୁକିଲା । ମାଧିଆ

Digitized by srujanika@gmail.com

ତୂର୍ ଚଢ଼ିବାକୁ ସ୍ଥିର କରି ପାରି ସେ ସ୍ଥିର ହୋଇ ରହିଲା । କିନ୍ତୁ ମାଧୁଆ ଯେତେବେଳେ କାଲିକୁ ଉଠାଇ ତାକୁ ସଙ୍ଗରେ ଅଣିବାକୁ ଗଲା, ସେତେବେଳେ ତୋଗ୍ର ତା ସହିତ ଆସିବାଲାଗି ଅସ୍ଥିର ହୋଇ ଉଠିଲା । ଅଗତ୍ୟା ମାଧୁଆକୁ କାଲି ସଙ୍ଗେ ସଙ୍ଗେ ତୋଗ୍ରର ଶିକୁଳି ଧରି ଅଣିବାକୁ ହେଲା । ତୋଗ୍ରର ବୁଦ୍ଧି ଅସମ୍ଭବରୂପେ ପ୍ରଖର ହେଲେହେଁ ଏ ସମୟରେ କାଲିକୁ ତା ନିକଟରୁ ଧରି ନେବାର କାରଣ ସେ ପ୍ରଥମେ ବୁଝି ପାରିଲା ନାହିଁ । ମାଧୁଆ ନିଜେ ତୋଗ୍ରକୁ ଧରି କାଲିକୁ ଖାନ୍‌ସାମାମାନଙ୍କୁ ଦେଲା । ତୋଗ୍ରର ବଡ଼ ସନ୍ଦେହ ହେଲା । ତଥାପି ସେ ତୁନି ହୋଇଥାଏ । ସାହେବ ସ୍ୱୀୟ ଆତତାୟୀ ପ୍ରକୃତିର ତର୍ପଣ କରିବା ଲାଗି ଉଦ୍ୟତ ହେଲେ । ଛୁରୀର ଫଳକ ଅକ୍ଷେକପାତରେ ଚକ୍ ଚକ୍ ହୋଇ ଉଠିଲା ।

ଖାନ୍‌ସମା ଦୁଇଜଣ କାଲିର ଗୋଡ଼ ବାନ୍ଧି ତାକୁ ସ୍ଥିର କରି ଠିଆ କରାଇଲେ ; ଯେପରି ଛୁରୀ ଚାଲିବା ସମୟରେ ସେ କୌଣସି ପ୍ରକାର ହଲଚଲ ହୋଇ ସାହେବଙ୍କର ଅସୁବିଧା ନ ଘଟାଏ । କାଲିର ଭାବନା କଣ ? ସେ ତାର ଜୀବନର ପ୍ରଭୁ ଜମିଦାର ବାବୁ ଏବଂ ସକଳ ଦୁଃଖ ବିପଦରେ ଆବାଲ୍ୟ ପରମବନ୍ଧୁ ତୋଗ୍ରକୁ ଦେଖି ନିର୍ଭୀକ ଭାବରେ ଠିଆ ହୋଇଥାଏ ଏବଂ ପାଦଦଣ୍ଡଟି ବନ୍ଧା ହେବାରୁ ଥରେ ତାର ଦୁଃଖ ସୁଖରେ ସାଥି ତୋଗ୍ର ଏବଂ ଥରେ ତାର ଆଶୈଶବ ବିଶ୍ୱାସୀ ପ୍ରଭୁଙ୍କ ପ୍ରତି ଦୃଷ୍ଟି ପକାଉଥାଏ । ଜମିଦାର ବାବୁ ବନ୍ଧୁଙ୍କ ପତ୍ନୀ ଓ କନ୍ୟାଙ୍କ ନିକଟରେ ଖୁସିଗଳ୍ପରେ ନିମଗ୍ନ ଥାଆନ୍ତି । ତଥାପି ତାଙ୍କ ଭିତରୁ କିଏ କହୁଦେଉଥାଏ, କାଲି ପ୍ରତି ଟିକିଏ ଦୃଷ୍ଟି ପକାଇବାକୁ । ସେ ଚାହିଁ ନ ଚାହିଁଲା ହୋଇ ହସ ଖୁସିରେ ନିମଗ୍ନ ଥାନ୍ତି । ତାକୁ ଚାହିଁଲେ ସେ

Digitized by srujanika@gmail.com

ମନୁଷ୍ୟ ଭାଷାରେ ଯେପରି କିଛି ପ୍ରକାଶ କରିଦେବାକୁ ଯିବ ଏବଂ ସେଥିରେ ସେ ଦୋଷୀ ସାବ୍ୟସ୍ତ ହେବେ, ଅଉ ତାଙ୍କ ସୁନାମରେ ବାଧା ଘଟିବ । ସାହେବଙ୍କ ହାତରେ ଛୁରୀ ଦେଖି ଚୋରର ସନ୍ଦେହ କ୍ରମେ ଦୂରୀଭୂତ ହେବାକୁ ବସିଲାଣି । ସାହେବ ଛୁରୀ ପରିଷ୍କାର କରି ଯେତେବେଳେ ଆସନରୁ ଉଠିଲେ, ଜମିଦାର ବାବୁଙ୍କ ଦୃଷ୍ଟି ହଠାତ୍ ତାହିଁକି କଲ୍ ଉପରେ ପଡ଼ିଲା ଏବଂ ତାଙ୍କର ମନେ ହେଲା, କଲ୍ ଅନେକକ୍ଷଣ ହେଲା ତାଙ୍କ ଏହିପରି କାତର ଦୃଷ୍ଟିରେ ଚାହିଁ ଜୀବନ ଭିକ୍ଷା କରୁଛି । ଜମିଦାର ବାବୁ କଣ ଗୋଟାଏ ବାହାନାରେ ଆସନ ଛାଡ଼ି ତମ୍ବୁ ମଧ୍ୟକୁ ଚାଲିଗଲେ; ଚୋର କିନ୍ତୁ କଲର ମିନତି ଶୁଣିଲା । ଅବାଲ୍ୟ ଅଶ୍ରୁପ୍ରଦାତା ପ୍ରଭୁଙ୍କଠାରୁ ହତାଶ ଦୃଷ୍ଟି ଫେରାଇ କଲ୍ ଯେତେବେଳେ ତାର ପ୍ରିୟ ସହଚର ଚୋରକୁ ଚାହିଁଲା, ଚୋର ପ୍ରାଣରେ ତାହା ବାଜିଲା । ସାହେବଙ୍କ ହାତରେ ନୃଶଂଶ ଛୁରିକା ଦେଖି ଚୋରର ଆଉ ବୁଝିବାକୁ ବାକି ରହିଲା ନାହିଁ । ଏହି ସ୍ଥଳୀରେ ସେ କେତେ ଛେଳି, ହରିଣ କଟାଯାଇଥିବାର ନିଜେ ଦେଖିଛି । ତାର ପ୍ରାଣ-ପ୍ରିୟ କଲ୍‌ର ଦଶା ତାହାହିଁ ହେବ, ଏଥିରେ ଆଉ ତାର ସନ୍ଦେହ ନାହିଁ ।

ସାହେବ ଯେତେବେଳେ ଛୁରୀ ଧରି ଉଠିଆସିଲେ, ତତ୍‌କ୍ଷଣାତ୍ ଚୋର ଗୋଟାଏ ଝଟକାରେ ମାଧୁଆ ହାତରୁ ମୁକ୍ତ ପାଇ ସଙ୍ଗେ ସଙ୍ଗେ କଲ୍‌କୁ ଧରିଥିବା ଜଣେ ଖାନ୍‌ସମାକୁ ଅଘାତ କଲା । ସାହେବ, ଚାକର, ଖାନ୍‌ସମା ପ୍ରଭୃତି ଇତସ୍ତତଃ ହୋଇ ଦ୍ରୁତଗତିରେ ତମ୍ବୁ ମଧ୍ୟରେ ପ୍ରବେଶ କଲେ । ଜମିଦାର ବାବୁ ତମ୍ବୁ ମଧ୍ୟରେ ଅନ୍ୟମନସ୍କ ଥିଲେ । ସାହେବଙ୍କର ଏ ଦୁର୍ଦ୍ଦଶା

Digitized by srujanika@gmail.com

ଛେଇଁ ସଙ୍ଗେ ସଙ୍ଗେ ତାଙ୍କୁ ଝମା ମାରିଲେ ଏବଂ ମାଧିଆ ଉପରେ କ୍ରୋଧରେ ଜଳ ଛିଟିଲେ । ତଥାପି ଅନ୍ତରର କ ଗୋଟାଏ ଅବ୍ୟକ୍ତ ବ୍ୟଥା ତାଙ୍କ ଭଙ୍ଗୀରୁ ସୁସ୍ପଷ୍ଟ ପ୍ରକାଶ ପାଉଥିଲା ।

ମାଧିଆ ଅତି କଷ୍ଟରେ ନାକେ ଢୋଗ ହାଗ ଅଘାତ-ପ୍ରାପ୍ତ ହୋଇ ଗୋଟାଏ ଗଛରେ ନେଇ ତାକୁ କଉପ ରୁଟେ ବାନ୍ଧଦେଲା । ସାହେବ ହସି ହସି ଛୁରୀ ହାତରେ ପୁନଶ୍ଚ ତମ୍ବୁ ମଧ୍ୟରୁ ବାହାରିଲେ । କୌତୁକ କଉଡ଼ା ଛଳରେ ଅବଦ୍ଧ ଢୋରକୁ ଛୁରୀ ଦେଖାଇ କଲ୍ ଅଭିମୁଖରେ ଚାଲିଲେ । ଜମିଦାର ବାବୁ ଦେଖିଲେ, କଲ୍ ପୂର୍ବପର ସେହି ଭାବର ଦୃଷ୍ଟିରେ ତାଙ୍କ ପ୍ରତି ଚାହିଁ ସାହାଯ୍ୟ ଭିକ୍ଷା କରୁଛି । ସେ ହଠାତ୍ ଉଠିପଡ଼ି ସାହେବ ବନ୍ଧୁଙ୍କ ଭଣ୍ଡ କାନ୍ଧବାକୁ ଯାଉଥିଲେ, “ବସ୍, ମୁଁ ଭଣ ପାଗଳ” କହି ପୁଣି ଆସନ ଗ୍ରହଣ କଲେ । ସେ ସ୍ଥାନରୁ ଉଠି ହୁରକୁ ଯିବାକୁ ତାଙ୍କର ଇଚ୍ଛା ହେଉଥିଲେହେଁ ସାହେବ କାଣ୍ଡ ମନେ କରି ପାରନ୍ତି, ଏହି ଆଶଙ୍କାରେ ସେ ଚେଷ୍ଟାରୁ କ୍ଷାନ୍ତ ହେଲେ । ସାହେବ କଲ୍ ନିକଟକୁ ଅସିବାର ଦେଖି ଜମିଦାର ବାବୁ ରୁମାଲ ଭାଡ଼ି ମୁହଁ ଘୋଡ଼ାଇଲେ । ଢୋରର ସ୍ୱର ବ୍ୟାକୁଳ କ୍ରନ୍ଦନ ତାଙ୍କ କର୍ଣ୍ଣରେ ପ୍ରବେଶ କରୁଥାଏ । ତାହାର ମଧ୍ୟରେ ଶୁଣି ପାରିଲେ ଗୋଟିଏ ରୁଦ୍ଧ କଣ୍ଠର ବିଳାପ । ସେ କେବଳ କର୍ଣ୍ଣରେ ନୁହେଁ ମର୍ମସ୍ଥଳୀରେ ପ୍ରବେଶ କଲା । ସେ ସ୍ୱର କଲର । ରୁମାଲ୍ ଭାଡ଼ି ଚାହିଁ ଦେଖିଲେ, ଶେଷ ।

ଖାନା ଟେବୁଲରେ ବସି ବସି କଲର ମାଂସ ଭକ୍ଷଣ କଲାବେଳେ ଜମିଦାର ବାବୁଙ୍କ ଅନ୍ତରାତ୍ମା ନାହିଁ ନାହିଁ କରି ଉଠିଲା । ସେ ପ୍ରାଣପଣେ ଚେଷ୍ଟା କରି ବନ୍ଧୁମାନଙ୍କ ସଙ୍ଗରେ ଯୋଗ ଦେଲେ । ବଡ଼ କଷ୍ଟରେ ଯତ୍ସାମାନ୍ୟ ଆହାର କଲେ ।

Digitized by srujanika@gmail.com

ଭିତରର କି ଗୋଟାଏ ଅବ୍ୟକ୍ତ ବ୍ୟଥାରେ ପ୍ରାଣ ଆକୁଳ ହୋଇ ଉଠିଲା । କଥା ଏତିକି, ଅତିଥିମାନଙ୍କ ମଧ୍ୟରୁ କେହି ତାହା ଲକ୍ଷ୍ୟ କରି ପାରି ନ ଥିଲେ । ଶୋଇବାକୁ ଯିବାବେଳେ ମାଧିଆ ଆସି ଖବର ଦେଲା, ଡୋକ୍ରାକୁ ମାଂସ ଅଧ ଯେତେ ଯାହା ଦିଆଗଲା, ସେ ତାହା ସ୍ପର୍ଶ କଲା ନାହିଁ ।

ଜମିଦାର ବାବୁ ଅନ୍ୟମନସ୍କ ହୋଇ ଶୟନ କକ୍ଷକୁ ଗଲେ । ନିଦ୍ରା ଆସୁ ନ ଥାଏ, ବିଛଣାରେ ପଡ଼ି କେତେ କଥା ଭାବୁଥାନ୍ତି । ଏ ଜଙ୍ଗଲ ସେ ଜଙ୍ଗଲ ବୁଲୁଛନ୍ତି, ହଠାତ୍ ମେଘର ଆକ୍ରମଣ ଓ ଚଉଦିଗ ଅନ୍ଧକାରଚ୍ଛନ୍ନ—ପୁଣି ସେହି ମଧ୍ୟାହ୍ନ ସମୟ, ଗୁଳି ଖାଇ ମାଆଟି ତାର ଭୂତଳଶାୟୀ ହେଲାଅଛି ନିର୍ବୋଧ ଶିଶୁ ଅବାକ୍ ହୋଇ ଅନାଇ ରହିଲା, ଟିକିଏ ହଲଚଲ ନାହିଁ, ସ୍ୱେଚ୍ଛାରେ ଆତ୍ମ-ସମର୍ପଣ କଲା । ପୁଣି ସେହି ଘନ ଅନ୍ଧକାର—ଦୁଇବନ୍ଧୁ ସ୍କନ୍ଧରେ ସଙ୍ଗୀନ୍ ରଖି ତମ୍ବୁ ଅଭିମୁଖରେ—ଛୁରୀ ଧରି ସାହେବଙ୍କର ନୃଶଂସ ହାସ୍ୟ, ଆଉ ସେ ହରିଣ ଶିଶୁଟିର କରୁଣ ଦୃଷ୍ଟିରେ ଜୀବନ ଭିକ୍ଷା ଏବଂ ମନୁଷ୍ୟ ଭାଷାରେ ବାକ୍ୟ ଉଚ୍ଚାରଣ—"ମୁଁ ପରା ମୋ ମାକୁ ଛାଡ଼ି ତୁମକୁ ଆଶ୍ରୟ କରି ଧରିଥିଲି ?" ଜମିଦାର ବାବୁ ଚମକି ଉଠି ଭାବିଲେ, ଏ ସ୍ୱପ୍ନ । ପୁଣି ନିଦ ଆସିଲା, ପୁଣି ସେହି କାରୁଣ୍ୟଭରା ଚାହାଣି, ପୁଣି ସେହି ମର୍ମବିଦାରକ ବିଳାପ । ଥରକୁ ଥର ନିଦ ଭାଙ୍ଗିଯାଏ, କିନ୍ତୁ ସେହି ଏକ ସ୍ୱପ୍ନ ।

ପ୍ରଭାତରୁ ଉଠି ଫେରି ଯିବାର ବନ୍ଦୋବସ୍ତ କରାଗଲା । ମଟରରେ ବନ୍ଧୁ ଓ ବନ୍ଧୁପରିବାରଙ୍କ ସହିତ ଜମିଦାର ବାବୁ ଘର ଚାଲିଗଲେ । ହସ ଖୁସିରେ ମନଟାକୁ ଭୁଲାଇବାର ଯେତେ ଚେଷ୍ଟା କଲେ ମଧ୍ୟ ଜମିଦାର ବାବୁଙ୍କ ଅନ୍ତରରେ ହରିଣ ଶିଶୁର

Digitized by srujanika@gmail.com

ସେହି ରୁଦ୍ଧ କନ୍ଦନର ବିରାମ ନାହିଁ । ବନ୍ଧୁ ପରିବାର ସେହି ଦିନ ବିଦାୟ ନେଇ ଗୁଲିଗଲେ ।

ମାଧିଆ ଡୋରିକୁ ଟାଣି ଟାଣି ବହୁ କଷ୍ଟରେ ଧରିସରି ହୋଇ ଆସି ପହଞ୍ଚିଲା ଏବଂ ବାବୁଙ୍କୁ କହିଲା, ଡୋରି ସେ ସ୍ଥଳରୁ ଆସିବାକୁ ଏକାବେଳକେ ନା-ମଙ୍ଗ । ଜମିଦାର ବାବୁ ସେତେ-ବେଳେ ଏକାକୀ ବସି ମନେ ମନେ କଣ ଭାବୁଥିଲେ । ମାଧିଆ ଆଉ କିଛି ନ କହି ଚୁପ୍ ହୋଇ ଗୁଲିଗଲା । ସେତେବେଳକୁ ଜମିଦାର ବାବୁଙ୍କର ପ୍ରବଳ ଅନୁଶୋଚନା ଉପସ୍ଥିତ । ବଡ଼ ସଂଯମରେ ସେ ନିଜକୁ ସ୍ଥିର କରି ରଖିଛନ୍ତି । ନ ହେଲେ ଲୋକମାନେ ତାଙ୍କୁ ପାଗଳ ବୋଲି ଭାବି ପାରନ୍ତେଣି । ଏହି ଅଜ୍ଞାନାମ୍ବୁଧି କୁକୁରଟାର ପାଦତଳେ ପଡ଼ି କ୍ଷମା ଭିକ୍ଷା କରିବାଲାଗି ତାଙ୍କ ପ୍ରାଣ ଭିତରୁ ଯେପରି କିଏ ବାଧ୍ୟ କରୁଛି । କାରଣ ସେ ନିଜକୁ ତା'ଠାରୁ ବହୁ ନିମ୍ନରେ ଦେଖୁଛନ୍ତି । 'କାହିଁ ମାଂସାଶୀ କୁକୁରଟାଠାରୁ କଣ ମୋ ଅନ୍ତର ଏତେଦୂର ନୃଶଂସ । ଛିଃ, ଛିଃ, ସଂସାରହାଟରେ କଣ କେବଳ ସବଳ ଦୁର୍ବଳକୁ ଅଧୀନ ରଖି ଅତ୍ୟାଚାର କରି; ଉଦରସାତ୍ କରି ଜୀବନଧାରଣ କରିବାକୁ ଜାତ ହୋଇଛି ? ଜଣେ ବଞ୍ଚିବ ବୋଲି ଆଉ ଜଣଙ୍କର ମୃତ୍ୟୁ ଏକାନ୍ତ ଅବଶ୍ୟକ । ମନୁଷ୍ୟ ଯେ ବଡ଼ାଇ କରିବାକୁ ବସିଛି, ଏହାର ଯୁକ୍ତି କଣ ନା, ସେ ସବୁ ଜୀବଠାରୁ ବୁଦ୍ଧିମାନ୍ ଓ ବିବେକବାନ୍ ।' ସତ୍ୟ ସତ୍ୟ ଜମିଦାର ବାବୁଙ୍କର ଭୀଷଣ ବିରାଗ ଓ ବିକାର ଜାତ ହେଲା । ଯେଉଁ ଜିହ୍ୱା କାଲିର ମାଂସ-ସ୍ୱାଦ ପରୀକ୍ଷା କରିଥିଲା, ତାହା କିପରି ଅବଶ ହୋଇଆସିଲା, କାଲିର କବଳ ଯେଉଁ ଗଳା ମଧ୍ୟରେ ଯାଇଥିଲା, ତାହା ସଙ୍କୁଚିତ ହୋଇ କିପରି ରୁଦ୍ଧ ହୋଇ ଆସିଲା । ଜମିଦାର ବାବୁ ମନେ

Digitized by srujanika@gmail.com

ଝଲେ, ସେ ଗଳା ଯଦ ଶରଦନ ଯାଇଁ ରୁଦ୍ଧ ହୁଏ ଏବଂ ସେ ଇଚ୍ଛା ଯଦ ଅବଶ ହୋଇ ଛୁଲ ହୋଇପଡ଼େ, ତେବେ ତାଙ୍କର ମର୍ମନ୍ତୁଦ ଯାତନାର ଟିକିଏ ଅବା ଉପଶମ ହୋଇ ପାରନ୍ତା ।

ଏହି ସମୟରେ ପଛରୁ କିଏ ଡାକିଲା, "ଇଲ୍ ଭାଇଁ ?" ଜମିଦାର ବାବୁ ଫେର ଗୁହିଁ ଦେଖିଲେ, ତାଙ୍କର ସେହି ଗୃହବର୍ତ୍ତିର ଶିଶୁ କନ୍ୟାଟି । ସେ ଉତ୍ତର କିଛି ନ ପାଇ ତତ୍‌କ୍ଷଣାତ୍ ଉଠିଯାଇ କନ୍ୟାକୁ ନିଜର ଉତ୍ତପ୍ତ ବକ୍ଷରେ ଚାପି ଧରି କହିଲେ, "ଅଛି ମା ଅଛି ।" ସେ କଥାରେ କର୍ଣ୍ଣପାତ ନ କରି ମୁହଁ ଫୁଲାଇ, ଆଖି ଛଳ ଛଳ କରି କହିଲା, "ମିଛ କଥା, ମାଧୁଆ କହିଲା, ସେ ସାହେବ ତାକୁ ମାରିଚି, ମୁଁ ସେ ସାହେବକୁ ମାରିବି ।" କନ୍ୟାର ରାଗ ଓ ଅଭିମାନ ଦେଖି ଜମିଦାର ବାବୁଙ୍କ ଚକ୍ଷୁରୁ ଲୋତକ ବର୍ଷିବାକୁ ଲାଗିଲା । ସେ ତାହା କନ୍ୟା ନିକଟରୁ ଲୁଗୁଇବାକୁ ଯାଇ ଧାଈ ହାତରେ କନ୍ୟାକୁ ଦେଇ ଚାଲିଗଲେ ଏବଂ ହୃଦୟର ଆବେଗ ଅସହ୍ୟ ହେବାରୁ ବିଛଣାରେ ପଡ଼ି ଶିଶୁପରି ଭୋ ଭୋ କାନ୍ଦିବାକୁ ଲାଗିଲେ । କିନ୍ତୁ କନ୍ୟାର ସେହି ପ୍ରଶ୍ନ "ଜଲ୍ କାଇଁ" ତାଙ୍କର ବାରମ୍ବାର ମନେ ପଡ଼ିଲା । ସେ ନିଜକୁ ସେହି ପ୍ରଶ୍ନ କରି ସ୍ୱୀୟ ଅଙ୍ଗ ପ୍ରତ୍ୟଙ୍ଗକୁ ଚାହିଁଲେ । ହରିଣ ଶାବକର ପ୍ରତ୍ୟେକ ଖଣ୍ଡ ଭୁକ୍ତ ମାଂସର କ୍ରନ୍ଦନ ତାଙ୍କର ପ୍ରତ୍ୟେକ ଲୋମକୂପରୁ ଫୁଟି ବାହାରିବାର ସେ ଶୁଣିଲେ । ତାଙ୍କର ପ୍ରତ୍ୟେକ ଶିରାରେ ଏ କ୍ରନ୍ଦନ ବିଜୁଳି ଗତିରେ ଚମକିବାକୁ ଲାଗିଲା । ଜମିଦାର ବାବୁ ରୁଗ୍ଣ ହୋଇ ପଡ଼ିଲେ—ଦୁଇ ସପ୍ତାହ ଜ୍ୱର ଓ ଅନାହାର । ସମସ୍ତେ ଭାବିଲେ, ଜମିଦାର ବାବୁ ଏ ଘାଟି ପାର ପାଇବେ ନାହିଁ । କିନ୍ତୁ ସେ ସୁସ୍ଥ ହେଲେ, ଅଥଚ ନୂଆ ଲୋକ ହୋଇ । ସାହେବଙ୍କ ଉପଯୋଗୀ ଅତିଥିଶାଳା ଦରିଦ୍ରମାନଙ୍କ ପାଇଁ ପାନ୍ଥ-ନିବାସରେ ପରିଣତ

Digitized by srujanika@gmail.com

ହେଲା । ଜମିଦାର-ଉଅସରେ ଅମିଷ ପ୍ରବେଶ ନଷିଦ୍ଧ ହେଲା ଏବଂ ଜମିଦାର ମଧ୍ୟରେ କେହୁ ମୃଗ ଶିକାର କମ୍ବା ବଧ କର ପାରବେ ନାହିଁ ବୋଲ୍ ହୁକୁମ୍ ଜାର ହୋଇଗଲା ।

ତୋର କୌଣସିମତେ ଅହାର କଲା ନାହିଁ । ଦନମାନ ନାରହାରରେ ପଡ଼ ରହଲା ଏବଂ ଜମିଦାରବାବୁଙ୍କ ପ୍ରଥମ ଅସୁସ୍ଥତା ଦନ କୌଣସିମତେ ମୁକ୍ତ ପାଇ ଖସି ଗୃଲଗଲା । ମାଧିଆ ଖୋଜ ଖୋଜ ତାକୁ ସେହୁ ଜମ୍ବୁ ପଡ଼ଥିବା ଜାଗାରେ ଜଲର ବଧ ଭୂମିକୁ ଅଘ୍ରାଣ କରୁଥିବାର ଦେଖିଲା । ଏହୁଠାରେ ସେ ତାର ପ୍ରସୂ ସଖାକୁ ହରାଇଛୁ—କୌଣସିମତେ ଯେବେ ସନ୍ଧାନ ପାଏ । ସେଥିଲାଗି କରୁଣ ବଳାପ କର ସେ ତାକୁ ଖୋଜ ବୁଲୁଛୁ । ମାଧିଆ ତାକୁ ଧର ଅଣିଲା । ଯେତେ ଯନ୍ କରାଗଲା, ସମସ୍ତ ବଫଳ ହେଲ । ପୁଣି ଦନେ କପର ସେ ଅଦୃଶ୍ୟ ହୋଇଗଲା । ଅଜ ଯେତେ ଯହିଁ ଖୋଜିଲେ ମିଳଲା ନାହିଁ । କେହୁ କେହୁ କହନ୍ତ ସେ ସେହୁ ଜମ୍ବୁ ପଡ଼ଥିବା ଦଗରେ ଯାଇଛୁ । କାଠୂରଅ-ମାନେ କହନ୍ତ, ନବଡ଼ ଜଙ୍ଗଲ ମଧ୍ୟରେ କାଠ କାଟିଲବେଳେ ସେମାନେ ବହୁବାର ରୁଦ୍ଧ ପଶୁକଣ୍ଠର ଗୋଟିଏ କରୁଣ ଅର୍ତ୍ତ ବଳାପ ଶୁଣି ପାରନ୍ତ । ସେ କନ୍ତୁ ଜଲର ନା ତୋରର ?

Digitized by srujanika@gmail.com

# ଟାଇପ୍-ଫୋର୍

ଲେଖକ—ଶ୍ରୀ ଅନନ୍ତପ୍ରସାଦ ପଣ୍ଡା

[ ବାଲେଶ୍ୱର ଜିଲ୍ଲା ଅନ୍ତର୍ଗତ କଳ୍ୟାଣୀ ଗ୍ରାମରେ ୧୯୦୭ ମସିହାରେ ଲେଖକଙ୍କର ଜନ୍ମ । ସେ ରେଭେନ୍‌ସା କଲେଜରୁ ବି. ଏ. ପାସ୍ କରି ୧୯୨୭ଠାରୁ ସରକାରୀ କାର୍ଯ୍ୟରେ ନିଯୁକ୍ତ ହୋଇଛନ୍ତି । ଗଳ୍ପ ଲେଖକ ଭାବରେ ଏହି ସାହିତ୍ୟିକ ସୁନାମ ଅର୍ଜନ କରିଛନ୍ତି । ସ୍ୱର୍ଗ୍ୟଚକ୍ର, ସଭ୍ୟତାର ତଳେ, ମୁକ୍ତ ଆକାଶର ବିହଙ୍ଗ, ନିହାରିକା, ଲୁଲ ପ୍ରଭୃତି ତାଙ୍କର ଶ୍ରେଷ୍ଠ ରଚନା ।

ଉପୃକ୍ତ 'ଟାଇପ୍-ଫୋର୍' ଗଳ୍ପଟିରେ ଲେଖକ ଆଧୁନିକ ଜୀବନର ଏକ ବାସ୍ତବ 'କରୁଣ-ଚିତ୍ର ପ୍ରଦାନ କରିଅଛନ୍ତି । ଯାନ୍ତ୍ରିକ ସଭ୍ୟତା ଯୁଗରେ ମନୁଷ୍ୟର ରୁଚି, ଆଦର୍ଶ, ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ଯେପରି ଲୋପ ପାଇଯାଉଛି । ବର୍ତ୍ତମାନ ଯୁଗ ନକ୍‌ସାର ଯୁଗ ବା ସ୍ୟାମ୍ପଲ୍ ପ୍ରଧାନ ଯୁଗ । ଟାଇପ୍ ଫୋର୍ ଘରେ ରମେଶ ବାବୁଙ୍କର ଅନୁଭୂତ ବାସ୍ତବ ଏବଂ କରୁଣ । ମନୁଷ୍ୟ ମନୁଷ୍ୟ ମଧ୍ୟରେ, ପଡ଼ୋଶୀ ପଡ଼ୋଶୀ ମଧ୍ୟରେ ଯେଉଁ ସଦ୍‌ଭାବ, ମୈତ୍ରୀ ଥିଲା ତାହା ଆଜିକାଲି ଲୁପ୍ତପ୍ରାୟ । ଯନ୍ତ୍ରବାଦୀ ସଭ୍ୟତା ଓ ସମତାଶାସନରେ ରହିବାଠାରୁ ବାସ କରିବା ଯାଏଁ ସମସ୍ତ ମଣିଷଙ୍କୁ ଗୋଟିଏ ଛାଞ୍ଚରେ ଗଢ଼ାଯାଉଛି । ଗାଆଁରେ ବାପାବୁଢ଼ା ଘରେ ରମେଶବାବୁ ଯେଉଁ ସୁଖ ଅନୁଭବ କରୁଥିଲେ, ସେହି ଶାନ୍ତି ସେହି ସୁଖ ଏପରି ଧରାବନ୍ଧା ବ୍ୟସ୍ତ ଜୀବନରେ ଅସମ୍ଭବ । କାରଣ, ଏଠି ବ୍ୟକ୍ତିସତ୍ତାର ଖାତେଇ ମୃତ୍ୟୁ ଘଟେ ଠିଆ ହୋଇଥାଏ । ]

Digitized by srujanika@gmail.com

କାମ ସାରି ଘରକୁ ଫେରିଲେ ରମେଶ ବାବୁ ଅଫିସ୍ କଥା, ଫାଇଲ୍ କଥା, ବଡ଼ ହାକିମ, ସାନ ହାକିମଙ୍କର ମିଠା କଡ଼ା ତର୍ଜନ ଗର୍ଜନ କଥା ସବୁ ଭୁଲି ଯାଆନ୍ତି । ସେ ସେ ପଡ଼ାର ବାବୁ । କାଲୁ ଖାଁ ଶଗଡ଼ଅଠାରୁ ଆରମ୍ଭ କରି ନାକଫୋଡ଼ା ସାହୁ ବଂଶ ଗୁଲ୍‌ଗୁଞ୍ଚବାଲା ପର୍ଯ୍ୟନ୍ତ ଛୋଟବଡ଼ ସାଇପଡ଼ଶା ଲୋକେ ଆସି ରମେଶ ବାବୁଙ୍କ ପାଖରେ ଛୋଟଛୋଟ କଥା କହନ୍ତି । ନିତାନ୍ତ ଗରଜ ଥିଲେ ରମେଶ ବାବୁଙ୍କଠାରୁ ଦି ଚାରି ଟଙ୍କା ଧାରି ଉଧାରି ନେବାକୁ ମଧ୍ୟ ଛାଡ଼ନ୍ତି ନାହିଁ । ରବିବାରଟାରେ ଅଫିସ ଛୁଟି । ସୁତରାଂ ସେ ଦିନଟା ରମେଶ ବାବୁ ପୁରାପୁରି ରମେଶ ବାବୁହିଁ ହୋଇ ଯାଆନ୍ତି ।

ଏତ ଗଲା ବାବୁଙ୍କ କଥା । ଘର ଭିତରେ ଥାଆନ୍ତି ରମେଶ ବାବୁଙ୍କ ସ୍ତ୍ରୀ ମନୋରମା ଓ ତାଙ୍କର ଅଣ୍ଡାବଚ୍ଚା ପୁଅ ଝିଅ ହୋଇ ସାତୋଟି । ବାବୁଙ୍କ ପିଲାପିଲି ନିକର ବିକର ପିନ୍ଧନ୍ତି, ଫ୍ରକ୍ ପିନ୍ଧନ୍ତି ଯଦିଓ ସଡ଼କ ନାଲି ଧୂଳିରେ ମଇଳା କିଟିକିଟିଆ ହୋଇ ଯାଇଥାଏ । ତଥାପି ପୋଷାକ ତ ! ସାହିର ଅନ୍ୟ ପିଲାଏ ଖାଲି ଫୁଙ୍ଗୁଳା ଦେହ—ନୁଖୁରା ବାଳ ଝାମ୍ପୁରୁ ଝାମ୍ପୁରୁ । ଆଉ ବାବୁଆଣୀ ? ସେ ତ ସେ ପଡ଼ାର ସାଆନ୍ତାଣୀ । କାଲୁଖାଁର ବିବିଠାରୁ ଆରମ୍ଭ କରି ସାହୁଆଣୀଯାଏ ସମସ୍ତେ ଡାକନ୍ତି ତାଙ୍କୁ ସାଆନ୍ତାଣୀ ବୋଲି । ସାଆନ୍ତାଣୀ ନୁହେଁତ କଣ ? ସେ ପାଠ ପଢ଼ିଛନ୍ତି ଅପରପ୍ରାଇମେରୀ ଯାଏ । ବହି ପଢ଼ନ୍ତି, ଚିଠି ଲେଖନ୍ତି, ବାହାରକୁ ବାହାରିଲେ ଗୋଡ଼ରେ ଚପଲ ହଳକ ଲଗାଇ ବାହାରନ୍ତି । ହାତରେ ସୁନାମଢ଼ା ବ୍ରୋଞ୍ଜର ଚୁଡ଼ି । କଲରଫୁଲିଆ ଧଡ଼ିବାଲା ଶାଢ଼ୀ ପିନ୍ଧନ୍ତି । ସାଆନ୍ତାଣୀ ଆଉ କାହାକୁ କହନ୍ତି ? କାଲୁଖାଁ ଶଗଡ଼ ଧରି ମାଲଗୋଦାମକୁ ବାହାରି ଗଲେ ତାର ବିବି

Digitized by srujanika@gmail.com

ଅସି ଦୁଆରେ ଡାକେ—ଏ ମା ସାଆନ୍ତାଣି, ଅଣ୍ଡା ନେବେ, ଅଣ୍ଡା ? ସାଆନ୍ତାଣୀ କବାଟ ଖୋଲନ୍ତି—ଦଶ ଗୋଟା ଅଣ୍ଡା କିଣନ୍ତି । ବରି ଗୁଲୁଗୁଲୁ ତିଆରି କରୁଥିବା ସାହୁଆଣୀ ଅସି କହେ—ଏ ମା ସାଆନ୍ତାଣି, ଅଜି ପିଲାଙ୍କ ଜଳଖିଆ ପାଇଁ ବରି ଗୁଲୁଗୁଲୁ ନେବ ନାହିଁ ? ସାଆନ୍ତାଣୀ ବରି ଗୁଲୁଗୁଲୁ ଦଅଣାର କିଣନ୍ତି ପିଲାଙ୍କ ପାଇଁ । ସାଇକେଲ୍ ମରାମତି ଦୋକାନୀର ସ୍ତ୍ରୀ ଅସି ପଚାରେ—ସାଆନ୍ତାଣୀ, ଅଜି କି ତରକାରି ହୋଇଥିଲା କି ?

ମନୋରମାଙ୍କର ମନ ଆନନ୍ଦରେ ଫୁଲି ଉଠେ । ସତେ ସେ ତ ନିଷ୍ଟପୃ ସାଆନ୍ତାଣୀଟିଏ ।

ରମେଶ ବାବୁଙ୍କ ପିଲାପିଲାମାନେ ମଧ୍ୟ ସେ ସାହିର ବାବୁ ପିଲା । ଅନ୍ୟ ସବୁ ଗୁଡ଼ାକ ତ ମଳମୁଣ୍ଡିଆ ପିଲା । ଏମିତି ଭାବରେ ରମେଶ ବାବୁଙ୍କ ଘର ସଂସାରଟି ବେଶ୍ ସୁଖରେ ଚାଲି ଯାଉଥାଏ ।

ଦିନେ ହଠାତ୍ ଅଫିସରୁ ଫେରି ରମେଶ ବାବୁ ହସ ହସ ମୁହଁରେ ଦୁଆର ମୁହଁରୁ ଡାକ ପକାଇ ପକାଇ ଘର ଭିତରକୁ ପଶିଗଲେ—ହେ ହେ ଶୁଣିଲଣି । ଶୁଣିଲଣି ? ନୂଆ ଖବର ଶୁଣିଲଣି ?

"ନୂଆ ଖବର ? ନୂଆ ଖବର କଣ ମ ? ତୁମର କଣ ଗ୍ରେକସ ବଢ଼ିଲା ? କେତେ ଟଙ୍କା ? କେତେ ଟଙ୍କା ବଢ଼ିଲା ମ ? ଏଣିକି ଜାଣ ବଢ଼ିଲା ଟଙ୍କାଗୁଡ଼ାକ ଖରଚ କରିବ ନାହିଁ । ଯେମିତି ଚାଲୁଛି ସେମିତି ଚାଲିଯିବା ତ । ସେଇତକ ବର୍ଷ ଦଶ କି—ଟୁନୁପାଇଁ ଧାନ ହାର କେତୋଏ କରି ଦେବା ।"

"ଅରେ କଥା କଣ ଶୁଣୁ ନାହଁ—ତୁମେ କେତେ କଣ ମତଲବ୍ କରି ସାରିଲଣି ।"

Digitized by srujanika@gmail.com

"ଅଳ୍ପ କଣ କହୁଲ ?"

"କଥା କଣ କି, ଆମ ଅଫିସ ଏବେ କଟକରୁ ଉଠିଯାଉଛି 'ନୂଆ ରାଜଧାନୀ ଭୁବନେଶ୍ୱରକୁ ।'

"ଏଁ ଏଁ. ଭୁବନେଶ୍ୱରକୁ ? ମା ଗୋ ମା । ଏ ଘରଦ୍ୱାର ସବୁ ଛାଡ଼ି ଯିବ ?"

"ମନ୍ଦ ମୋର, ତୋର ତୁମ ନିଜ ଘର ଯେ ମୋହ ଛାଡୁ ନାହିଁ ? ବୁଝୁଛ—ଏମିତିକା ଅନ୍ଧାରୁଆ ଘରେ ଆଉ ରହିବାକୁ ପଡ଼ିବ ନାହିଁ କି ଏମିତି ଧୂଳିଧୂସରିଆ ରାସ୍ତାରେ ଚାଲିବାକୁ ହେବନାହିଁ ।"

"ତେବେ ?"

"ତେବେ କଣ ? ଏକ୍‌ବାର ସିଦ୍ଧାଆ ରାସ୍ତା । ସଟ୍ ସଟ୍ ସାଇକେଲ୍ ଉପରେ ଗୋଡ଼ ଦେଲ୍ କି ଗଡ଼ିଲ । ତା ପରେ ଘର । ଏକ୍‌ବାରେ ଟାଇପ୍-ଫୋର୍ ।"

"ଆରେ ଟାଇପ୍ ଫୋର୍ କଣ ?"

"ଆଃ, ଟାଇପ ଫୋର୍—ଟାଇପ୍ ଫୋର୍ ବୁଝିପାରୁ ନାହିଁ ? ଏଇ ଟାଇପ୍ ଫୋର୍—ଫୋର୍ ଫୋର୍ । ଏଇ ଗୃହ ଗୃହ—ଗୃହ ଟାଇପ୍ ଘର ।"

"ଗୃହ ଟାଇପ୍ ଘରେ କଣ ଗୃହଟା ଶୋଇବା ଘର ? ତେବେ ତ ବେଶ୍ ଭଲ । ଗୋଟେ ଘର ବଇଠକ୍‌ଖାନା କରିବା ଯେ କେହିବାକ ସାଇ ପଡ଼ୋଶୀ ଆସିଲେ ବସିବେ ।"

"ଆରେ ନାଁ ନାଁ, ଟାଇପ୍ ଫୋର୍‌ରେ ଗୃହଟା ଘର ନାହିଁ, ଯେ ଅଛି ମାତ୍ର ଯୋଡ଼ିଏ । ତେବେ ଘର କଣ ଘର ଏକା । ବିଜୁଳି ଆଲୁଅ, ବିଜୁଳି ପଙ୍ଖା, ଜଳ ପାଇଖାନା ସବୁ ଠିକ୍‌ଠାକ୍ । ସାଇବ କୋଠି ତ ।"

Digitized by srujanika@gmail.com

ରମେଶ ବାବୁଙ୍କ କଥା ଶୁଣି ମନୋରମାର ମନ ଖୁସି ହୋଇଗଲା । ମନେ ମନେ କଳ୍ପନା କରି ବସିଲେ—ଏଥର ନୂଆ ରାଜଧାନୀର ଟାଇପ୍ ଫୋର୍ ଘରକୁ ଗଲେ ସାଇପଡ଼ୋଶୀମାନଙ୍କୁ କେମିତ ପଙ୍ଖା ତଳେ ବସାଇ ସୁବର୍ଦ୍ଧା ଟିପି ଦେବେ ଯେ ପଙ୍ଖା ଘର୍ ଘର୍ କରି ବୁଲୁଥିବ ।

× × ×

ଘ ଘନ ବାଦ୍ ରମେଶ ବାବୁଙ୍କ ଘର ଅଗରେ ଲାଲ୍‌ଗାଡ଼ି ଲାଗି ଠିଆ ହେଲା । ଜିନିଷପତ୍ର ସବୁ ଲଦା ହେଲା । କଟକ ସହରର ଅନ୍ଧାରିଆ ଗଳି ଭିତରୁ ଯାଇ ରମେଶ ବାବୁ ଏକବାରେ ନୂଆ ରାଜଧାନୀର ଚିକ୍କଣିଆ ସଡ଼କ ଉପରେ ହାଜର ହେଲେ ।

ମନୋରମା ଟାଇପ୍ ଫୋର୍ ଘର ଭିତରକୁ ପଶି ଯାଇଁ ଯାଇଁ ପଛକୁ ଫେରି ଗୁହିଁ ଦେଲେ । ଆଖି ଦିଟା ଖୋସି ହୋଇଗଲା । ଏଁ, ଏ ଫେର୍ ଗୋଟାଏ କଣ ? ଠିକ୍ ତାଙ୍କ ଘର ଆଗରେ ଗୋଟାଏ ପ୍ରକାଣ୍ଡ କୋଠା । ବାପ୍‌ରେ, କେଡ଼େ ବଡ଼ ହତା ବୁଲୁଛି । ଅଗରେ ନାଲି, ନେଳି, ସବୁଜ, ଛିଟ୍‌ଛିଟିଆ କେତେ ରଙ୍ଗ ବେରଙ୍ଗରେ ଫୁଲ ଫୁଟିଛି । ଆଉ ତାଙ୍କ ଟାଇପ୍ ଫୋର୍—ହାତୀ ଆଗରେ ମୂଷା—ନୁଖୁରା ଟାଙ୍ଗରା । ଅଗରେ ଯେଉଁ ସାଇବ କୋଠିଟି ଅଛି—ସେ କୁଆଡ଼େ ତାଙ୍କ ବାବୁଙ୍କ ବଡ଼ ହାକିମଙ୍କ କୋଠି । ତା ସେପାଖକୁ ନାଲିଆ ବେଗନ୍‌ଭେଲ୍ ଫୁଲ୍ ଲଗିଥିବା ହତା ଭିତରେ ସେ ଯେଉଁ କୋଠିଟି ଦିଶୁଛି, ସେ ହେଉଛି ତାଙ୍କ ଉପର ହାକିମଙ୍କ କୋଠି । ତାଙ୍କ ଘର ସାମନା ସାମନା ଯେଉଁ ଘରଗୁଡ଼ିକ ଦିଶୁଛି, ସେଗୁଡ଼ିକ ହେଉଛି ଟାଇପ୍ ଫାଇଭ୍—ଅର୍ଥାତ୍ ତାଙ୍କ ବାବୁଙ୍କଠାରୁ ବେଶୀ ଦରମା ପାଉଥିବା କିରାଣୀବାବୁମାନଙ୍କ ଘର । ମନୋରମାଙ୍କ ମନ ଭିତରେ

Digitized by srujanika@gmail.com

କେମିତି କଣ ହୋଇଗଲା । ମୁଣ୍ଡ ଉପରୁ ଶ୍ରମ ଝାଳ ବୋହିପଡ଼ିଲା । ଘର ଭିତରକୁ ପଶିଲାକ୍ଷଣି ଦେଖିଲେ ଯେ, ପିଲାଏ ଫଟ୍‌ଫାଟ୍ କରି ପଙ୍ଖା ବୁଲାଇ ଦେଉଛନ୍ତି । ଘର ଭିତରେ ପବନର ଝଡ଼ । ତଥାପି ମନୋରମାଙ୍କ ମୁଣ୍ଡରୁ ବୋହିପଡ଼ୁଛି ଟୋପା ଟୋପା ଶ୍ରମଝାଳ— ଥପ୍ ଥପ୍ । ମୁହଁସଞ୍ଜ ହୋଇ ଆସୁଥାଏ । ପିଲାଏ ସୁଇଚ୍ ଟିପି ଦେଲେ—ଘର ଭିତରଯାକ ବଲ୍‌ବ ଆଲୁଅ ଝଲସି ଉଠିଲା; କିନ୍ତୁ ମନୋରମାଙ୍କ ଆଖିକୁ କିପରି ଦିଶିଲା ଅନ୍ଧାର ଜାଲ୍‌ଜାଲିଆ ।

ମନୋରମା ଝରକା ବାଟେ ଚାହିଁଲେ—ତାଙ୍କ ଘର ଆଗରେ ଥିବା ବଡ଼ ହାକିମଙ୍କ ମେମ୍‌ସାହେବ—ଉଞ୍ଚା ଗୋଇଠିବାଲା ଯୋତା ପିନ୍ଧି ଟଗ୍ ଟଗ୍ ହୋଇ ଚାଲି ଯାଉଛନ୍ତି । ତାଙ୍କ ସାଙ୍ଗେ ଚାଲିଛନ୍ତି ତାଙ୍କ ସାଇବ—ପାଖରେ ଯୋଡ଼ାଏ ହେଟାବାଘ ପରି କୁକୁର । ରମେଶବାବୁ ସେଇବାଟେ ଫେରୁଥିଲେ । ବଡ଼ ସାହେବଙ୍କୁ ଦେଖି ସାଇକେଲ୍‌ରୁ ଓହ୍ଲାଇ ପଡ଼ି ମୁଣ୍ଡ ନୋଇଁ ଜୁହାର ହେଲେ । ମନୋରମାଙ୍କ ମୁହଁ ମଉଳି ପଡ଼ିଲା । ସାଇବ ସାଇବାଣୀ ଚାଲିଗଲେ ତାଙ୍କ ଦାଣ୍ଡ ଦୁଆର ଦେଇ । ଟିକିଏ ବି ଥରେ ଆଖିରେ ଚାହିଁଲେ ନାହିଁ ମନୋରମା ଆଡ଼କୁ । ମନୋରମା ଭାବିଲେ—ତାହିଁ ତାଙ୍କର ପଡ଼ୋଶୀ ହେଲେ କାଙ୍କ ବାବା ? ତାହିଁ ସେଇ ବରି ଗୁଲ୍‌ଗୁଲ୍‌ବାଲା ସାହୁଆଣୀ ? ତାହିଁ କେବେ ତ ତାଙ୍କ ଦୁଆରକୁ ପଶି ଆସି ଆଜ୍ଞା ସାଆନ୍ତାଣୀ ବୋଲି ଡାକୁ ନାହାନ୍ତି ? ମନୋରମାର ମନ ମଧ୍ୟରେ ବୋହିଯାଉଛି ଏକ ତୁମୁଳ ତୋଫାନ୍ । ସେ କିଏ ? କେଉଁଠି ତାଙ୍କର ସ୍ଥାନ ?

ରମେଶବାବୁ ଘର ଭିତରକୁ ପଶି ଅସ୍ତ ଅସ୍ତ ଦେଖିଲେ ପିଲାଛୁଆଙ୍କ ସବୁଯାକ ପଙ୍ଖା ଖୋଲି ଦେଇଛନ୍ତି । ଝୁ-ଝୁ-ଝୁ—ଘର

Digitized by srujanika@gmail.com

ଉଡରେ ଗୋଟାଏ ଝଡ ବାହୁଛନ୍ତି ଯେପରି । ଅଲ୍ପ ଜାଣା ଦେଉଛନ୍ତି । ରମେଶବାବୁ ଗର୍ଜିଉଠି କହୁଲେ—"ଅରେ ହତଭାଗା ଦଳ, କରୁଛ ଏ ସବୁ କଣ ? ଚେଡେଡ ଖବର ବଢ଼ାଇ ଦେଉଛ ଜେ । ମା ସାଆନ୍ତାଣୀ ତମର କାହାନ୍ତି କି ?"

ମନୋରମା ନୀରବ ନିଶ୍ଚଳ ପ୍ରସ୍ତରମୂର୍ତ୍ତି । ତାଙ୍କ ଅଙ୍ଗ ଅଟରେ ନାଚ ଯାଉଛନ୍ତି, ସେଇ କାଲି ଶୁଣିର ସୀଗୀ—କାନରେ ବାଜି ଯାଉଛନ୍ତି—'ଏ ମା ସାଆନ୍ତାଣୀ, ଅଣ୍ଡା କେବେ ଅଣ୍ଡା ?' ସତେ ଯେପରି ସାହୁଆଣୀ ଅସି ! କୁଅରେ ଡାକ ଯାଉଛନ୍ତି—'ଏ ମା ସାଆନ୍ତାଣୀ, କବ ଗୁଲ୍‌ଗୁଲ ନେବ ?'

ରମେଶବାବୁ ପଗ୍ଚରିଲେ—ଏମିତ ମୂକ ଭଳିଆ ବସିଛ କାହିଁକି ? ଦେଉ କଣ ମନକୁ ପାଉନାହିଁ କି ?

ମନୋରମା ଭଗ୍ନ ଗଳାରେ କହିଲେ—ଏମିତ ଜାଗାରେ ଘର କାହିଁକି ନେଲ ? ଖାଲି ଏଇମିତିକା ଘର ଥିବା ପଡ଼ା ନାହିଁ ନା ?

ରମେଶବାବୁ କହିଲେ—ହଁ ଯେମିତ ହେମିତ ପଡ଼ା ସବୁ ଅଚନ୍ତୁ ଉଅର ହେଉଥିଲି ଯେ, କିନ୍ତୁ କେନ୍ଦ୍ରଙ୍କ ବଡ଼ବଡ଼ୁଆ ଲୋକ କହିଲେ ପାହାଚ ପାହାଚ ନ କରି ଗୋଟିଏ ପଡ଼ାରେ ବଡ଼ ସାନ ସମସ୍ତଙ୍କ ପାଇଁ ଘର କରିଦିଅ । ସେଥିପାଇଁ ଏବେ ମିଶାସଙ୍ଗ କରି ସାଇବଙ୍କ କୋଠି ପଛକୁ ଅମ ଟାଇପ୍ ଫୋର୍ କ୍ୱାଟର୍ ହୋଇଛି ।

"ତମେ ଏ ଟାଇପ୍ ଫୋର୍ ବାଛିଲ କାହିଁକି ?"

"ମୁଁ ବାଛିଲି ? ଅଚ୍ଛା କଥା କହୁଚ ତମେ ? ମୁଁ ବାଛିଲି କେମିତ ? ଅମେ ସବୁ ସେଇ ଚତୁର୍ଥ ପାହାଚର ନୌକର । ସେଥିପାଇଁ ଅମକୁ ଏଇ ଟାଇପ୍ ଫୋର୍ ମିଳିଛି ।"

Digitized by srujanika@gmail.com

ଏତକ କଥା ଭାବୁ ଭାବୁ ରମେଶବାବୁଙ୍କ ଆଖି ଛଳ ଛଳ ହୋଇ ଉଠିଲା, ସ୍ୱର ରୁଦ୍ଧ ହୋଇ ଆସିଲା । ଦୀର୍ଘ ଦଶବର୍ଷ ସେ ସରକାରୀ ଚାକିରୀ କରି ଆସିଥିଲେ । କିନ୍ତୁ ଅଫିସରୁ ଫେରିଲା ପରେ ସେ ଆଉ କେବେ ଚାକିରୀ କଥା ଭାବି ନାହାନ୍ତି କି କେହି ତାଙ୍କୁ ସେ କଥା ମନେ ପକାଇ ଦେଇ ନାହିଁ । ଅଫିସରୁ ଫେରିଲା ପରେ ସେ ପୂର୍ବପରି ମାଲଟି ଯାଉଥିଲେ ତାଙ୍କ ପଡ଼ାର ବଡ଼ ବାବୁ । ସାଙ୍ଗ ପଡ଼ୋଶୀଙ୍କ ସାଥିରେ ସେ ମଣିଷ ଭାବରେ ଚଳି ଆସୁଥିଲେ ତାଙ୍କ ସୁଖ, ଦୁଃଖରେ ଆପଣାକୁ ଭାଗୀଦାର କରି । କିନ୍ତୁ ଆଜି ଏଇ ନୂଆ ରାଜଧାନୀର ଟାଇପ୍ ଫୋର୍ ଘରେ ରହିଲାବେଳକୁ କାଏ ପେପର୍ ପ୍ରତି ମୁହୂର୍ତ୍ତରେ ତାଙ୍କ ମସ୍ତିଷ୍କରେ ଗୋଟାଏ ଲମ୍ବା ଚୋଟ ଫୋଡ଼ି ଫୋଡ଼ି ତାଙ୍କୁ ଚେତାଇ ଦେଉଛି ଯେ, ସେ ଚାକର—ସେ ନୌକର—ସେ ମଣିଷ ନୁହନ୍ତି—ସେ ଗୋଟାଏ ଶ୍ରେଣୀର ଜୀବ—ଟାଇପ୍ ଫୋର୍—ଟାଇପ୍ ଫୋର୍ । ଜେଲ୍ ଭିତରେ କଏଦୀମାନଙ୍କ ପିଠିରେ ଯେପରି ନମ୍ବର ଲଗା ବସିଥାଏ, ହାସ୍ପାତାଳ ଭିତରେ ରୋଗୀଙ୍କ ମୁଣ୍ଡ ଉପରେ ଯେପରି ନମ୍ବର ପ୍ଲେଟ ଝୁଲୁଥାଏ—ସେଇମିତି ତାଙ୍କ ପିଠିରେ ଆଜି ଗୋଟାଏ ଲଗା ବସିଛି—'ଟାଇପ୍ ଫୋର୍' ।

# ଗୀତ ମାଷ୍ଟର

## ଲେଖକ—ଶ୍ରୀ ପ୍ରାଣବନ୍ଧୁ କର

[ କଟକ ଜିଲ୍ଲା ଅନ୍ତର୍ଗତ ଉମପଡ଼ାଠାରେ ୧୯୧୮ ମସୀହାରେ ଲେଖକଙ୍କର ଜନ୍ମ । ସେ ଉଚ୍ଚ ଶିକ୍ଷା ଲାଭ କରି ସାରିବା ପରେ ୧୯୪୧ ମସୀହାରୁ ଶିକ୍ଷା ବିଭାଗରେ ଅଧ୍ୟାପନା କାର୍ଯ୍ୟ କରୁଛନ୍ତି । ଲେଖକ ତରୁଣ ବୟସରୁ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇ ଧାରାବାହିକ ଭାବରେ କ୍ଷୁଦ୍ର ଗଳ୍ପ ଏବଂ ଏକାଙ୍କିକା ପ୍ରଭୃତି ବିଭିନ୍ନ ପତ୍ର ପତ୍ରିକାରେ ଲେଖିଥାନ୍ତି ।

"ଏକାଙ୍କିକା" "ପ୍ରାଣବନ୍ଧୁଙ୍କ କ୍ଷୁଦ୍ରଗଳ୍ପ" ନାମକ ଦୁଇଟି ପୁସ୍ତକ ତାଙ୍କର ପ୍ରଧାନ ରଚନା ।

'ଗୀତ ମାଷ୍ଟର' ତାଙ୍କଦ୍ୱାରା ଲିଖିତ ଏକ କ୍ଷୁଦ୍ରଗଳ୍ପ । କଦାକାର ରୂପ ମଧ୍ୟରେ ସୁନ୍ଦର ପ୍ରତିଭା ଥାଇପାରେ, ଗଳ୍ପଟିରେ ତାହାହିଁ ସୂଚିତ । ବଟର ସଙ୍ଗୀତ ମାଷ୍ଟରର ଦୃଷ୍ଟିଶକ୍ତି ନାହିଁ ଏବଂ ତାହାର ରୂପ ଅସୁନ୍ଦର— ମାତ୍ର ତାର କଣ୍ଠ-ମାଧୁର୍ଯ୍ୟ ବର୍ଣ୍ଣନାତୀତ । ]

'ଛୁନୁ ! ଗାନ୍ ଶିଖ୍‌ବେ ଏସ'—ଆଶ୍ଚର୍ଯ୍ୟ ହୋଇଗଲି; ଛୁନୁ ଫେର୍ କେବଠୁଁ ଗୀତ ଶିଖିବାକୁ ଆରମ୍ଭକଲା ? ମାଷ୍ଟର ଗଳା ଶୁଣି ପାରି ବୋଧହୁଏ ଛୁନୁ ଆସି ଛିଡ଼ାହେଲା ମୋ ପାଖରେ । କହିଲି, 'ତୁ ଗୀତ ଶିଖୁଚୁ ଛୁନୁ ? ଗାଇଲୁ ଦେଖିବା କେମିତି ଗାଉ

Digitized by srujanika@gmail.com

ଶିଖନ୍ତୁ ।' କିନ୍ତୁ ସେ ମୋ କୋଳକୁ ଲଗି ଠିଆ ହୋଇ ରହିଲା । ତାର ସୁନ୍ଦର ଛୋଟ ଆଖି ଦୁଇଟିରେ ଗୃହିଁ ରହିଲା ମୋ ଆଡ଼େ । କିଛି ବୁଝି ପାରିଲି ନାହିଁ । ଦାଣ୍ଡ ଦୁଆରକୁ ଯାଇ ଦେଖିଲି ମାଷ୍ଟର ଛିଡ଼ା ହୋଇଛନ୍ତି । ଚମକି ପଡ଼ିଲି ତା ଚେହେରା ଦେଖି । ଏଇ ଫେର୍ ଗୀତ ମାଷ୍ଟର ? ଇସ୍, କି ବଦାକାର ଚେହେରା ! ଲୋକଟା ଫେର୍ ଅନ୍ଧ ! ଗୋଟାଏ ଆଖିରୁ ପାଣି ଗଡ଼ୁଛି ଅନବରତ । ଅଉ ଗୋଟାଏ ସବୁବେଳେ ଖୋଲା—ଜ୍ୟୋତି ନାହିଁ । ଛୋଟ ପିଲା ମାନେ ଦେଖିଲେ ଭୟ କରିବେ ଏପରି ଚେହେରାକୁ । କହିଲି—“ଆପଣ ଛୁନୁକୁ ଗୀତ ଶିଖାନ୍ତି ?”

ମାଷ୍ଟର ଓଡ଼ିଆ ବୁଝିପାରେ କିନ୍ତୁ କହି ପାରେ ନାହିଁ । ବଙ୍ଗଳାରେ କହିଲା—“ହଁ ବାବୁ । କିନ୍ତୁ ଛୁନୁ କିଛି ଶିଖୁନି, ଯେତେ କହିଲେ ସୁଦ୍ଧା ଗାଇବ ନାହିଁ ।”

ମୁଁ କହିଲି—“ଅଚ୍ଛା, ମୁଁ କହିଲେ ଗାଇବ ଯେ ।”

ମାଷ୍ଟର ହାର୍ମୋନିଅମ୍ ନେଇ ବସିଲା । ଛୁନୁ ବସିଲା ମୋ କୋଳରେ ମୋତେ ଜାକିଧରି । ମାଷ୍ଟର କହିଲା—“ଛୁନୁ ! ମା ! କହ—ସା—ଆ—ଆ—ଆ ।”

କିନ୍ତୁ ଛୁନୁ ଗୃହିଁ ରହେ ଅନ୍ଧ ମାଷ୍ଟର ଆଡ଼କୁ ଆଖି ତରଟି କରି ।

“ଛୁନୁ ! କହ—ସା—ଆ—ଆ—ଆ ! କହ ।”

ଗୀତ ଶିଖାଇବାର ଆଗ୍ରହ, ବ୍ୟଗ୍ରତା ଫୁଟି ଉଠୁଥିଲା ମାଷ୍ଟରର ମୁହଁରେ । କିନ୍ତୁ ଛୁନୁର ପାଟି ଫିଟୁନାହିଁ । ଛୁନୁକୁ ଟିକିଏ ଆଦର କରି କହିଲି—“କହେ ଛୁନୁ, ଗାଉନୁ ? ମାଅଟା ପସ ଗାଅ ।

Digitized by srujanika@gmail.com

ଗାଆନ୍ତେ-ଓ-ଓ । ମୁଁ ତୋ ପାଖରେ ଆଉ କଥା କହିବି ନାହିଁ—ଯାଉଛୁ—ଛାଡ଼ ମୋ ହାତକୁ ।”

ରୁନୁ ମାଷ୍ଟର ହାତ୍‌ରେ ଛାନ୍ଦି ଧରିବା ପରେ ତା ବର୍ଣ୍ଣିକ ଗ୍ରୋଷ୍ଠ ହାତ ଦୁଇଟିରେ ଆଉ କରୁଣ ଆଖିରେ ଗୁହାରି ମୋ ଆଡ଼କୁ । ମୋଟେ ସ୍ୱର ବର୍ଷର ଝିଅ—କଅଣ ବା କହିବ ତାକୁ । କିଛି ବୁଝି ପାରିଲି ନାହିଁ । କହିଲି—

“ମାଷ୍ଟର ବାବୁ ! ଆପଣ କେବଳ ଗୀତ ଶିଖେଇବାକୁ ଆସୁଛନ୍ତି ?”

“ଏଇ ଛଅ ମାସ ଦିନ ହେବ ।”

“ତାର ତ ଆପଣଙ୍କ ସାମନାରେ ମୁହଁ ଖୋଲୁନାହିଁ । ଏତ କେତେ ଦିନ ହେଲେ କଅଣ ଶିଖିଥିବ ?”

“କିଛି ନାହିଁ, ମୋ ପାଖକୁ ମୋଟେ ଆସେନା । ମାଆ ତାକୁ କୋଳରେ ଧରି ବସନ୍ତି ।”

ମୁଁ କହିଲି—“ଛୁଆ କି ନା—ଖୁବ୍, ଗୀତରେ ମନ ବସେ ନାହିଁ । କିଛିଦିନ ଗଲେ ଅବା—”

ମାଷ୍ଟର କହନ୍ତି—“ଏଇ ବୟସରୁ ନ ଶିଖିଲେ ବଡ଼ ହେଲେ ଆଉ ଶିଖିବ କଅଣ ? ଏଇଟା ତ ଝିଅମାନଙ୍କର ଗୀତ ଶିଖିବାର ସମୟ । ରୁନୁ ! ଆ, ସୁନାଝିଅଟା—ସେ ଗାଇବନାକି ବଳେ ! ଭଡ଼-ସା-ଆ-ଆ-”

କିନ୍ତୁ ରୁନୁ ପୂର୍ବବତ୍ ।

ମାଷ୍ଟରର ଗୀତ ଶିଖେଇବାର ଏତେ ଆଗ୍ରହ ଯେ କାହିଁକି ସେ କଥା ମୁଁ ଅବଶ୍ୟ ବୁଝି ପାରିଥିଲି । ତଥାପି କହିଲି—“କାହିଁକି ଆଉ ମିଛରେ ଆପଣ ଏତେ କଷ୍ଟ କରୁଛନ୍ତି ତାକୁ ଶିଖେଇବାକୁ ଇଚ୍ଛା ନାହିଁ ଯେତେବେଳେ । ତେବେ ମନ ତାର ବର୍ତ୍ତମାନ, ଆଉ

Digitized by srujanika@gmail.com

ଟିକଏ ବଡ଼ ହେଇ ଶିଖିବ । ମୋ କଥାରେ ଟିକଏ ତାହାର ବିରକ୍ତିଭାବ ପ୍ରକାଶ ପାଇଲା ପରି ମୋର ମନେ ହେଲା ।

କିନ୍ତୁ ମୋ କଥାକୁ ନ ଧରି ମାଷ୍ଟର କହିଲେ, "ଆପଣ ଏ କ'ଣ କହୁଛନ୍ତି ? ଅଳ୍ପରୁ ଅଭ୍ୟାସ ନ କଲେ ହବ କିମିତି ? ଏହାପରେ ପ୍ରତିଦିନ ଅଧଘଣ୍ଟାଏ କରି ମୋ ପାଖରେ ବସୁ ତା ପରେ ଯାଉ ତା ମନ ଲାଗିବ ନା ? ଏତେ ଶୀଘ୍ର କ'ଣ ହୋଇଯିବ ଆପଣ ଭାବୁଛନ୍ତି ? ମୁଁ ଏମାନ ପିଲାକୁ ଶିଖେଇଛି...... ମୁଁ ପ୍ରତିଦିନ ଆସି ତାକୁ ଶିଖେଇବି । ଶିଖିବ ନାହିଁ କିବ କୁଆଡ଼େ ? ଝୁନୁ ମାଆଟା ପରି, ଆସିଲୁ ମୋ ପାଖକୁ"—ହାତ ବଢ଼ାଇଲେ । ଝୁନୁ ମତେ ଅଧିକ ଜୋର୍‌ରେ ଜାପ୍‌ଟି ଧରିଲା । ମନେ ହେଲା ମୋର, ମାଷ୍ଟରଙ୍କୁ ଦେଖି ଝୁନୁର ଖୁବ୍ ଭୟ ହେଉଛି ।

"ଝୁନୁ ! କହ-ସା-ଅ-ଅ.......ରେ ନ ଗାଇଲେ ମା ମତେ ବକିବେ ଯେ—ମତେ ଡାଙ୍ଗଦେବେ ଯେ ।" ଗୃହକର୍ତ୍ତାର ଛୁଆ ସ୍ୱରରେ ଫେରିଲେ । କ'ଣ ଭୁଟିଙ୍ଗ ସେ ? ହଠାତ୍ ବେଗକୁ ସମ୍ଭାଳି ରଖି ଗୃହିଣୀ ଆସିଲେ ଭିତରକୁ—ଝୁନୁ ମଧ୍ୟ ମୋ ପଛେ ପଛେ ।

ଭାଉଜ ଲୁଡ଼ୁ ଖେଳୁଥିଲେ । କହିଲି—"କ'ଣ ଭାଉଜ, ଝୁନୁତ ମୁହଁ ଫିଟେଇଲା ମାଷ୍ଟର ପାଖରେ—ସେ ଖରାପ କିନ୍ତୁ ଭାବ ଚେଷ୍ଟା କରୁଛି ।"

ଭାଉଜ ହସି ହସି କହିଲେ—"ତା ଆଖି ଦେଖି ଝୁନୁ ଡରୁଛି । ତାକୁ ଆଉ ରଖିବା ନାହିଁ ଭାବୁଛି ।"

ଝୁନୁ ତାର ସୁନ୍ଦର ଗୋଲ ମୁହଁଟି ମୋ ଅଣ୍ଟା ଉପରେ ରଖି ମୋ ଆଡ଼କୁ ଚାହିଁ କହିଲା—"ମୋ ବୋଉ ଖେ-ଓ-ଓ । ଅଣ

Digitized by srujanika@gmail.com

ଝଟା ଦେଖିଲେ ମତେ ଭାରି ଡର ମାଡ଼ୁଛି । ଏ ଅଖିଟାରୁ ପୂଜ ବାହାରୁଛି, ଆଉ ଏ ଅଖିଟାରେ ଇମିତ ଚାହିଁଚ—" କହି ସେ ହାତରେ ତା ବାଆଁ ଅଖି ପଢାଟାକୁ ଟେକି ଧରିଲା । ତାର କଅଁଳ ଓଠରେ ଗୋଟିଏ ଚୁମା ଦେଇ କହିଲି—"ନାହିଁ ମ—ତା ଅଖିକୁ କିଛି ଦିଶୁନ ବୋଲି ସେମିତି ଦେଖଉଚ ନା । ସେଥିପାଇଁ ତୁ ଆମର କହିବୁ କାହିଁ ? ସେ ତତେ କେତେ ଗେଲ କରୁଛି କହିଲୁ ?"

ତହିଁ ଅବଧନ ମାଷ୍ଟର ଅସିଲ, ଅଗଭଳା ଅନେକ ପ୍ରୟାସ କଲା । କିନ୍ତୁ ଛୁନୁ ଗାଇବା ତ ଦୂରର କଥା, ତା ସାମନାକୁ ବି ଗଲା ନାହିଁ । ଦୂରେଇଛଡ଼ା ହୋଇ ମୋ ନିକଟରେ ବସି ରହିଲା । ଅତି କଷ୍ଟରେ କେବଳ 'ସା' ପଦକ ଶୁଣି ବ୍ୟର୍ଥ ମନୋରଥ ହୋଇ ମାଷ୍ଟର ତିନିଦିନ ପରେ ସେଦିନ ମଧ୍ୟ ଫେରିଲା । ଅନ, ତଥାପି ସ୍ତ୍ରୀ ଚାଲି ପାରେ ଭଲ ମଣିଷଙ୍କ ପରି । ଲକ୍ଷ୍ୟ କଲି—ଗୁଲ୍ଲି-ଦେଲେ ଚେ ମୂର୍ତ୍ତିକୁ ହଲେଇ ହଲେଇ ଗୁଡେଇ—ଛତାଖଣ୍ଡି ବାଆଁ କାଖତଳେ ଜାକି । ସାଜ୍ ଉପରେ ଅଙ୍ଗୁଳି ଗୁଣନା କଲାପରି ଅଙ୍ଗୁଠି ଗୁଡ଼ାକ ଗୁଣୁଥାଏ, ଆଉ ଗୁଣୁଗୁଣୁ ଗାଉଥାଏ କୁଆଣି ।

ଭାଉଜ କହିଲେ, "କାଲି ଆସିଲେ ତାକୁ ମନା କରିଦେବ, ଆଉ ଆସିବ ନାହିଁ ।"

କହିଲି—"ମନା କରିବା କାହିଁକି ? ଆସୁ, ଗରିବ ଅଛିଟିଏ—ଦିପଇସା ପାଇବ । ଛୁନୁର ଏ କଥା କିଏ ବୁଝିପାରିବ ? ମନେ କର ଯେ, ତୁମେ ଗୋଟିଏ ଅନ୍ଧକୁ ମାସିକ ତିନୋଟି କରି ଟଙ୍କା ଦାନ କରୁଛ । ଆମର ଅଭାବ କଅଣ ? ତା ପରେ ସେ ତ ତା କର୍ତ୍ତବ୍ୟରେ ହେଳା କରୁ ନାହିଁ ?"

Digitized by srujanika@gmail.com

ସାଉନ୍ତ ଭ୍ରୁକୁଟିରେ ହସ ମିଶାଇ କହିଲେ—"ଏତେ ଦୟା କାହିଁକି ମ ତମର ? ଏଠି ଟିଉସନ୍ ନକରୁଥିଲାବେଳେ ତାର ପେଟ୍ ଚଳୁଥିଲା ନା ନାହିଁ ?"

କହିଲି—"ଚଳେ ସବୁ—ଏ ଦୁନିଆରେ ଅଚଳ ରହେନାହିଁ କାହାର । କିନ୍ତୁ ଅଭାବ ତ ଅଛି ମନୁଷ୍ୟର—କାହାର ବେଶୀ, କାହାର ବା କମ୍ । କ'ଣ ଭାବୁଛ ? ତାର ଅଭାବ ନ ଥିଲେ ସେ ଆମର ଏଠି ବୁନୁକୁ ଏତେ ଆଗ୍ରହରେ ଗୀତ ଶିଖେଇବାର ପ୍ରୟାସ କରନ୍ତା ?"

ମାଷ୍ଟରର ବେଦନାକ୍ଳିଷ୍ଟ ମୁହଁଟି ମୋ ଆଖି ଆଗରେ ଭାସି ଉଠିଲା । ତା ଶରୀରର ପ୍ରତି ଅଣୁପରମାଣୁରେ ଫୁଟି ଉଠିଛି ଅଭାବ, ଦାରିଦ୍ର୍ୟ । ମଇଳା ଛିଣ୍ଡା ତାଳିପକା କନାଗେଞ୍ଜି, ରୁକ୍ଷ କେଶ, ଛିଣ୍ଡା ଛତା, ଛିଣ୍ଡା ଲୁଗା, ଛିଣ୍ଡା ଚଟି ।

ପରଦିନ ମାଷ୍ଟର ଆସିଲା । ତାକୁ କୁହାଗଲା ଯେ, ତାର ଆଉ ଆସିବା ଦରକାର ନାହିଁ । ଦେଖିଲି, ତା ମୁହଁଟା ଫିକା ପଡ଼ିଗଲା । ଡାକିଲା—"ରମୁବାବୁ ।"

ଏଇ ପଦକରେ କେତେ ଯେ କାତର ମିନତି ଝରି ପଡୁଥିଲା ।

କହିଲି—"ମାଷ୍ଟର ବାବୁ, ମୁଁ କ'ଣ କରିବି ?"

"ନା, ନା, ଆପଣ ଟିକିଏ ଯାଇ ମାଆଙ୍କୁ ବୁଝାଇ କହନ୍ତୁ । କେତେ କଷ୍ଟରେ ମୁଁ ଏ ଟିଉସନ୍‌ଟି ପାଇଛି । ମୋର ଯେ ଭାରି ଅଭାବ । ମୋର କ'ଣ ଦୋଷ ? ମୁଁ କ'ଣ କର୍ତ୍ତବ୍ୟରେ ତ୍ରୁଟି କରୁଛି ? ନା, ମୁଁ କେବେ ଏ ଟିଉସନ ଛାଡ଼ିବି ନାହିଁ ।" ସ୍ୱର ତାର କାନ୍ଦ କାନ୍ଦ ହୋଇ ଆସିଲା ।

Digitized by srujanika@gmail.com

ଭାବପ୍ରବଣ ମନ ମୋର, ଅନ୍ୟର ଦୁଃଖ ଦେଖିଲେ ମୋର ଆଖି ମଧ୍ୟ ଛଳ ଛଳ ହୋଇ ଆସେ । କିନ୍ତୁ ମୁଁ ବା କଅଣ କରିପାରେ ? କହିଲି—"ଭାଉଜଙ୍କ ନିକଟକୁ ଯାଆନ୍ତୁ ।"

ମାଷ୍ଟର ଗଲେ—କିନ୍ତୁ ସେ ସମ୍ପୂର୍ଣ୍ଣ ଲେଖାର କଠୋର କର୍ତ୍ତବ୍ୟ-ସାଗରରେ ନିଜକୁ ବୁଡ଼ାଇ ବସିଛନ୍ତି । ତାଙ୍କ କାନରେ ଦୀନର ଏହି ତୁଚ୍ଛ (?) ମିନତି ବାଜିଲା ନାହିଁ ବୋଧହୁଏ ।

ମାଷ୍ଟର ସିଧା ସିଧା ଗଲେ ଭଉଜଙ୍କ ନିକଟକୁ ।

"ମା ! ମୋର ଦୋଷ କଅଣ ? ମତେ ତଡ଼ି ଦେଉଛନ୍ତି—ମୁଁ କେବେ ଖାଇବି କଅଣ ? ମୋର ଆଉ ଦୁଇଟି ଟିଉସନ୍ ଛଡ଼ା ଅନ୍ୟ କୌଣସି ସମ୍ବଳ ନାହିଁ । ଛୁଆଙ୍କୁ ପିଲାଦିନରୁ ଅଭ୍ୟାସ ନ କରାଇଲେ ବଡ଼ ହେଲେ ତାର କଅଣ ଗତି ହେବ ?"

ଭଉଜ କିଛି କହିଲେ ନାହିଁ, କେବଳ ତାଆଡ଼େ ମୁହଁ ବୁଲି ଦେଲେ ଟିକିଏ—ତାର ଏଇ ଚାକୁର ମିନତି ଦେଖି ତାଙ୍କୁ ଲାଗିଲା ହାସ୍ୟ । ଆହା ! ବିଚାର କିଛି ସେ ଦେଖି ପାରୁନାହିଁ । ଖାଇବାକୁ ପାଉନାହିଁ । ତାର ଅଭାବ ଯୋଗୁଁ ସେ ଭିକ ମାଗୁଛି ତିନି ଟଙ୍କାର ଟିଉସନ୍‌ଟି ଫେରାଇ ଦେବାକୁ—ଆଉ କିଛି ନୁହେଁ । ନିତି ଖଟିବ, ଅଥଚ ମାସରେ ପାଇବ ତିନୋଟି ମାତ୍ର ଟଙ୍କା—ତାର ଅକ୍ଳାନ୍ତ ଚଲାବର ବିନିମୟରେ ।

ଏକାନ୍ତ ଦୁଃଖ ଓ ସହାନୁଭୂତିର ଦୀର୍ଘ ଶ୍ୱାସଟିଏ ବାହାରି ଆସିଲା ମୋ ବକ୍ଷ ଭେଦକରି । ଚାଲି ଆସିଲି ସେହି କରୁଣ ଦୃଶ୍ୟର ଅନ୍ତରାଳକୁ ।

× × × ×

Digitized by srujanika@gmail.com

"ମାଷ୍ଟର ବାବୁ, ଭଲ ଅଛନ୍ତି ତ ?"

"ସେ କଥା ଆଜ ତାହାଙ୍କୁ ପଚାରୁଛନ୍ତି ରମୂବାବୁ ? କୌଣସି ପ୍ରକାରେ ଦିନଟା କଟିଯାଉଛି । ବେଳାଏ ଖାଇଲେ ଅଉବେଳ ଉପାସ ।"

ତାର କଥାରେ ଟିକିଏ ଅଭିମାନ ଫୁଟି ଉଠିଥିଲା ପରି ମନେ ହେଲା । ତାର ଜ୍ୟୋତିହୀନ ଆଖି କରୁଣ ହୋଇ ଉଠିଲା ।

"ଭାବୁଛି ଆଜ ଏଠି ବେଶୀ ଦିନ ରହିବି ନାହିଁ । ଅନେକଦିନ ରହିଗଲି ଏଠି—ପ୍ରାପ୍ତ ଦଶବର୍ଷ । ଆଦର କମିଗଲାଣି । ନିଜ ଦେଶକୁ ଯିବା ଭଲ, ବରଂ ସେଠି କିଛି ଯୋଗାଡ଼ଯନ୍ତ—"

ଟିକିଏ ହସ ମାଡ଼ିଲା ମତେ—ଏ ଫେର୍ ବଙ୍ଗ ଦେଶରେ ପାଇବ ଆଦର, ଯେଉଁଠି ଅନେକ ଭଲ ଭଲ ସଙ୍ଗୀତଜ୍ଞ ମଧ୍ୟ ପେଟରେ ଓଦାକନା ପକେଇ ବସିଛନ୍ତି ।

ପଚାରିଲି—"ନିଜ ଦେଶରେ ଅଛି କିଏ ଅଛି ?"

"କେହି ନାହିଁ ମୁଣ୍ଡଗୁଞ୍ଜିବା ପାଇଁ ଉଦ୍ଧଖଣ୍ଡିକ ଛଡ଼ା ।"

ବଡ଼ ଦୁଃଖରେ ତା ମୁହଁରୁ ଏଇ କେତେପଦ ବାହାରିଲା । ତଥାପି ତା ମୁହଁରେ ଗୋଟିଏ ମିଠା ହସ ଲାଗିରହିଛି । ମୁହଁଟା ତାର କଦାକାର; କିନ୍ତୁ ବାହାରର ଏହି କଦର୍ଯ୍ୟତା ତା ଭିତରେ ଯେଉଁ ରୂପକୁ ଘୋଡ଼େଇ ରଖିଛି, ତାହା ପ୍ରକୃତରେ ଅତୁଳନୀୟ । ତେଜଅଡ଼େ ଚାହିଁ ରହିଲି । କୌଣସି ଉପକାର କରିବାର ଶକ୍ତି ମୋର ନ ଥିଲା ।

"ଅଚ୍ଛା, ମୁଁ ଅସୁଛି ରମୂବାବୁ"—କହି ଟିକିଏ ହସି ସେ ଚାଲିଲା—ଗୁଣୁଗୁଣୁ ସ୍ୱରରେ ଗୋଟିଏ ଗୀତ ଗାଇ । ଏଇ ଗୀତହିଁ ତା

Digitized by srujanika@gmail.com

ବ୍ୟର୍ଥ-ଜୀବନର ଏକମାତ୍ର ସମ୍ବଳ। ତେଣୁ ଏତେ ଦୁଃଖରେ ମଝି ସେ ଗୀତ ଗାଏ। ଏ ବସ୍ତୁ ହରାଇବେ ତାର ନିଜର ବୋଲିବାକୁ କିଛିନାହିଁ। ବାହା ମଝି କରିନାହିଁ ସେ। ମାଆଟି ଛଡ଼ା ଅଉ କେହି ନାହିଁ ତାର—ଅଛି ଯୋଡ଼ିଏ ଛେନାଟ ଟିଉସନ୍, ଅଉ କେତେଗୁଡ଼ିଏ ପୁରୁଣା ଗୀତର ପୁଞ୍ଜି।

ଥରେ ହଠାତ୍ ଦେଖାହେଲା। ପଚାରିଲି ନିର୍ବୋଧଙ୍କ ପରି—"ଅପଣ ବାହାକରି ନାହାନ୍ତି କାହିଁକି ମାଷ୍ଟର ବାବୁ ?"

ସେ ହସି ପକେଇଲା ଟିକିଏ। ତା ପରେ ତା ହାତଟି ମୋ ତାନ କୁଟଟରେ ରଖି ଟିକିଏ ଚିପି ଦେଇ କହିଲା—

"ବାହା ? କିଏ ମତେ ବାହା କରିବା କହନ୍ତୁ ଦେଖି ? ପିଏବା କରିବା ତାର ଭରଣପୋଷଣ ମୁଁ କରିପାରିବି ତ ?"

ବାସ୍ତବିକ ଏପରି ପ୍ରଶ୍ନ କରିବାହିଁ ମୋର ଅନ୍ୟାୟ। ବ୍ୟର୍ଥ ଜୀବନର କଥା ତାକୁ ମନେ କରେଇ ଦେଇ କେତେବଡ଼ ଅଘାତ ମୁଁ ତାକୁ ଦେଲି ଜାଣେ ନା······ହାୟ ଏମାନଙ୍କ ପେଇଁ ଭଗବାନ ବଞ୍ଚେଇ ରଖନ୍ତି କାହିଁକି ? ଯାହାଙ୍କ ଜୀବନ ପୂର୍ଣ୍ଣ କେବଳ ବ୍ୟର୍ଥତାରେ, ଦୁଃଖରେ, ନୈରାଶ୍ୟରେ, ଏମାନଙ୍କୁ ବଞ୍ଚେଇ ରଖି ତୁମେ କି ସୁଖ ପାଅ ଭଗବାନ ? ଏପରି ନ କଲେ କଅଣ ତୁମର ସୃଷ୍ଟି ମୂର୍ତ୍ତିର ଲଭ କରେନା ? × × × କରନ୍ତା ନାହିଁ ବୋଧହୁଏ। ତାହାହେଲେ ନୂତ୍ୟ ମନୁଷ୍ୟକୁ କେନ୍ତା ନାହିଁ ଦୟା। ନଥାନ୍ତା ଅତ୍ୟାଚାରୀ ଧନୀର ଦଳ। ଅଉ ବୁଭୁକ୍ଷୁ ତାର ଦୁଃଖ ଓ ନିରାଶାର ସ୍ୱରବୋଳ ବୋଧହୁଏ ବୃଷ୍ଟି ବିରୁଦ୍ଧରେ ଯୁଦ୍ଧ ଘୋଷଣା କରନ୍ତା ନାହିଁ। ସୃଷ୍ଟିର ଅରମ୍ଭରୁ ଥାଅନ୍ତା ସମତା ବା ସାମ୍ୟବାଦ।

Digitized by srujanika@gmail.com

ଭେଟେଇବେଳେ ଯେ ସଞ୍ଜ ହୋଇଗଲା ବୁଝି ପାରିଲି ନାହିଁ । ଅନ୍ଧାରରେ ମଧ୍ୟ ଦୂର ଟେଳିଗୁଡ଼ାକ ରୂପାପରି ଚକ୍‌ଚକ୍ କରୁଥିଲା । ପ୍ରତିଦିନ ବେଣୀ ଘଣ୍ଟାଏ ବସି ତାକୁ ହିଁ ଦେଖେ; କିନ୍ତୁ ଆଜି ତାହା ମନେ ହେଲା—ଅର୍ଥହୀନ; ମନୁଷ୍ୟର ସୁଖ ଦୁଃଖର ଅଂଶ ନେବ କିଏ ନାହିଁ । ଉଦାସୀନ । ଘରମୁହାଁ ଚାଲିଲି ।

ପ୍ରତିଦିନ ଯେଉଁ ବାଟ ଦେଇ ଘରକୁ ଫେରେ, ସେଦିନ ସେ ବାଟେ ନ ଯାଇ ଫେରୁଥିଲି ଅନ୍ୟ ଗୋଟାଏ ବାଟରେ । ଗୋଟାଏ କୋଠା ସାମନାରେ ପହଞ୍ଚି ଶୁଣିଲି, କିଏ ଗୀତ ଗାଉଛି । ଦୁଆର ଖୋଲା ଥିଲା । ଚାହିଁ ଦେଖେଁ ସେଠି ଅନ୍ଧ ମାଷ୍ଟର—ତା ସାମନାରେ ବସିଛି ଗୋଟାଏ ଝିଅ—ଆଠ ନଅ ବର୍ଷର । ତା ଛୋଟ ମୁହଁଟି ବିକୃତ; ଅସନ୍ତୋଷଭରା । ମନେ ହେଲା, ଯେପରି ସେ ମାଷ୍ଟରର ଗୀତକୁ ପସନ୍ଦ କରୁନାହିଁ । ତେଣୁ ସେ ତା ଛୋଟ ଭୁରୁ ଦିଓଟି ଟେକି ଚାହିଁ ରହିଛି ମାଷ୍ଟରର ମୁହଁକୁ । ଦୁଃଖ ହେଲା । ଆହା, ତାର ଆଖି ଦିଓଟି ଯଦି ଭଲ ଥାଆନ୍ତା, ନେଞ୍ଜର ବସ୍ତୁ ନଥାନ୍ତା, ପିଲାମାନେ କଅଣ ତାକୁ ଏତେ ଘୃଣା କରନ୍ତେ ? ଗୀତ ବନ୍ଦ ହେଲା । ମାଷ୍ଟର କହିଲା—“ସାବି ! ତୁ ଏଇଟା ଗାଅ ତ ମା ?”

ସାବି କହିଲା—“ମୁଁ ଗାଇପାରିବିନି । ଛେନା ଗୀତ ।”

ଏ ଧରଣର କଥା ମାଷ୍ଟରକୁ ଅନେକ ଶୁଣିବାକୁ ପଡ଼େ । ତା ଛଡ଼ା ଛୋଟ ଛୋଟ ଝିଅଙ୍କର ଏସବୁ କଥାକୁ ଧରି ବସିଲେ ତାର ପେଟ କୃତ୍ୟ ଚଳିବ ନାହିଁ ।

ଟିକିଏ କରୁଣ ହସ ହସି ମାଷ୍ଟର କହିଲା—“ଅବାଧ୍ୟ କାହିଁକି ହେଉଛୁ ? ସାବିନୀ, ଗାଅ ନା ।”

Digitized by srujanika@gmail.com

ସାବ ତା କଥାକୁ ଭ୍ରୂକ୍ଷେପ ନ କରି ଗୃହଗଳ୍ପ ଭିତରକୁ । ଅନ୍ଧଅଧିଆରେ ଗୃହିଁ ମାଷ୍ଟର ବସିରହିଲା, କିନ୍ତୁ କାହିଁ ଆଲୋକ ? ତା ଆଖିରେ ଅନ୍ଧକାର ଛଡ଼ା ଯେ ଆଉ କିଛି ନାହିଁ । କେବଳ ଆଲୋକର ସ୍ପର୍ଶ ସେ ଯାହା ଅନୁଭବ କରୁଛି, ସେତିକି । ସେତିକିରେ ସେ ପାଏ ସୁଖ । ଜୀବନଟା ତାର ଅନ୍ଧକାରମୟ । ଏତେ ଦୁଃଖରେ ମଧ୍ୟ ମନୁଷ୍ୟ ବଞ୍ଚିରହେ । ଜଗତର ସୁଖରେ ଯାହାର ଟିକିଏ ମାତ୍ର ଦାବି ନାହିଁ, ତାର ପୁଣି ବଞ୍ଚି ରହିବାକୁ ସଉକ୍ ହୁଏ କାହିଁକି ? ସତରେ କଅଣ ତାର ବଞ୍ଚି ରହିବାକୁ ସଉକ୍ ହୁଏ ? ହୁଏ ତ ସେ ମୃତ୍ୟୁକାମନା କରେ; ତଥାପି ତାକୁ ବଞ୍ଚିରହିବାକୁ ହେବ ଅଭିଶପ୍ତ ଜୀବନର ଦୁର୍ବିସହ ବୋଝ ମୁଣ୍ଡାଇ । ସେ ମରି ପାରେ ନାହିଁ କି କହିପାରେ ନାହିଁ—ମୁଁ ମରିପାଆନ୍ତି ହେଲେ । ତା ଛଡ଼ା ତାର ଗୋଟିଏ ବୃଦ୍ଧା ମାଆ ଅଛନ୍ତି । ସେ ତୋର ଯେ ଚାହିଁବ କିପରି ?

ଘରକୁ ଆସି ମୋର ଶେଷ ଚେଷ୍ଟା କଲି । କହିଲି—ଭାଉଜ । ଅସୁନା ଅଜଟି, ଛୁନୁକୁ ଗୀତ ଶିଖେଇବାକୁ ।

ଭାଉଜ କହିଲେ—ବର୍ତ୍ତମାନ ନୁହେଁ, ଛୁନୁ ଆଉ ଟିକିଏ ବଡ଼ ହୋଇଯାଉ ସେ ଆସିବ ।

କହିଲି—ତୁମେ ଚିରଦିନ ଏଇଠି ଥିବ ନା କଅଣ ? ଭାଇନାଙ୍କର ଟ୍ରାନ୍ସଫର୍ ହବନି ?

"ତେବେ ମୁଁ ଆଉ କଣ କରିବି କହ ? ଆମକୁ ଯେତେବେଳେ ଏଠୁ ଯିବାକୁ ହେବ, ତାକୁ ନେଇ ଆଉ ଲାଭ କଅଣ ?"

କହିଲି—ଅନ୍ତତଃ ଯେତେ ଦିନଯାଏ ଏଠି ଅଛ, ସେତିକି ଦିନ ତ ତାକୁ ରଖାଯାଇ ପାରେ । ଅଚ୍ଛା, ତୁମେ ଏତେ ଜୋଟି କରି

Digitized by srujanika@gmail.com

ଝିଙ୍କା ଗୋଟିଏ ନିଃସହାୟ ଅନ୍ଧକୁ ଦାନ କରୁଛ ବୋଲି ମନେ କରୁଥାନ୍ତୁ ନାହିଁ କାହିଁକି ?

ହସି ହସି ଭିକ୍ଷୁକ କହିଲେ—ତା ମୁଁ କୋଉଠି ପାରୁଛି—କହ ରମୁ, ପିଲା ଝିଲା ନେଇ ସେତେବେଳେ ଘର କରୁଛ ?—ଏହି ହସ ଭିତରେ ପ୍ରକାଶ ପାଉଥିଲା ତାଙ୍କ ହୃଦୟର ପ୍ରକୃତ ପରିଚୟ ।

ଦେଖିଲି, ଏତେ କହିଲି, କିଛି ଲାଭ ହେଲା ନାହିଁ । ନୀରବ ରହିଲି ।

× × × ×

ତା ପରେ ପ୍ରାୟ ଦଶଟି ମାସ ବିତିଯାଇଛି । ରୁନୁର ମାଷ୍ଟର କଥା ମୁଁ ଏକପ୍ରକାର ଭୁଲିଯାଇଛି । ସେଦିନ ହଠାତ୍ କଅଣ ଖିଆଲ ହେଲା, ଷ୍ଟେସନ୍ ଆଡ଼େ ବୁଲି ବାହାରିଗଲି । ପାସେଞ୍ଜର ଗାଡ଼ିବାର ସମୟ ହେବାରୁ ଖଣ୍ଡିଏ ପ୍ଲାଟ୍‌ଫର୍ମ ଟିକେଟ୍ କାଟି ଭିତରକୁ ଗଲି । ଯାତ୍ରୀଙ୍କ ଭିଡ଼ ନାହିଁ—ଇତସ୍ତତଃ ଆଡ଼କୁ ଚାହିଁ ଚାହିଁ ମୁଁ ବୁଲୁଛି । ହଠାତ୍ ଅନ୍ଧ ମାଷ୍ଟର ଉପରେ ନଜର ପଡ଼ିଲା । ଚମକି ଉଠିଲି । ମନେ ପଡ଼ିଗଲା, ଦୁଇ ମାସ ତଳର ଅନ୍ଧର ଧ୍ରୁବପଦ କଥା—"ଯାଉଛି ମୁଁ ଆଜ ଏଠି ରହିବି ନାହିଁ ।—"

ଆଗେଇ ଯାଇ ପଚାରିଲି—"କୁଆଡ଼େ ଚାଲିଛନ୍ତି ମାଷ୍ଟର ବାବୁ ?"

"କିଏ ? ରମୁ ବାବୁ ! ଆଃ, ମୋର ସୌଭାଗ୍ୟ, ଯିବାବେଳେ ଆପଣଙ୍କ ସାଥିରେ ଦେଖା ହୋଇଗଲା । ଯାଉଛି ଦେଶକୁ, ଆଉ ଫେରିବି ନାହିଁ । ଜଗନ୍ନାଥଙ୍କ ପାଦତଳେ ସ୍ଥାନ ଭାବିନେଇଥିଲି । କିନ୍ତୁ ଦେଲେ ନାହିଁ ସେ ମୋପାଇଁ—" × × ×

ଆଉ କିଛି କହିପାରିଲି ନାହିଁ । ତାର ଅନ୍ଧ ନିଷ୍ପ୍ରଭ ଅକ୍ଷି ଦ୍ୱୟରୁ

Digitized by srujanika@gmail.com

ବୋହିପଡ଼ିଲା ବଡ଼ ବଡ଼ ଧଟୋପା ଗରମ ଲୁହ । ତଥାପି ତା ମୁହଁରେ ଲାଗି ରହିଛି ସେଇ ଚିରନ୍ତନ ହସଟି ।

ମନୁଷ୍ୟ ଯେତେବେଳେ ଦୁଃଖର ଶେଷସୀମାରେ ପହଞ୍ଚେ, ସେ ନିଜପର ବିଶ୍ୱାସ ହରାଏ ଭଗବାନଙ୍କ ଉପରୁ । ଏହାହିଁ ସ୍ୱାଭାବିକ ।

ଅଲକ୍ଷ୍ୟରେ ମୋର ଦୁଇ ଗାଲବାଟେ ଦୁଇଟୋପା ଲୁହ ଗଡ଼ିପଡ଼ିଲା ।

ପଚାରିଲି—"ଆପଣଙ୍କ ମାଆ କାହାନ୍ତି ?"

"ତେଇଟି ବସିଛନ୍ତି । ମା, ଇସ୍କୁଲେ ଟିକିଏ ଆସିଲ, ବମୁବାବୁ ତୁମକୁ ଟିକିଏ ଦେଖିବେ—ଯାହାଙ୍କ କଥା ମୁଁ କହୁଥିଲି ।"

ବ୍ୟସ୍ତ ହୋଇ କହିଲି,—"ନାହିଁ, ଥାଉ ଥାଉ—ବୁଢ଼ୀ ଲୋକ—କାହିଁକି ଅକାରଣରେ କଷ୍ଟ...... ।"

"ନା, କଷ୍ଟ କଅଣ ବାପା ?" କହି ତା ମା ଝରକା ନିକଟକୁ ଆସିଲେ ।

କହିଲି—ଚାଲି ଯାଉଛନ୍ତି ?

ବୁଢ଼ୀ କହିଲେ—କପାଳରେ ନାହିଁ ବାପ ଏଠି ମରିବା ଲାଗି, ସେଥିପାଇଁ ନୀଳାଚଳନାଥ ଡାକୁଛନ୍ତି ମତେ । ବୁଝିଲ ବାପା, ବଡ଼ ଦୁଃଖୀ ଅମେ"— କହି ଲୁଗାକାନିରେ ଆଖି ପୋଛିଲେ ।

"ନିଜ ଯିବାପାଇଁ ଭଡ଼ାଟା ମଧ୍ୟ କଅଣ କମ୍ କଷ୍ଟରେ ଯୋଗାଡ଼ ହୋଇଛି ।"

ଟ୍ରେନ୍ ଛାଡ଼ିବା ହୁଇସ୍ଲ ବାଜିଲା । ମନିବ୍ୟାଗ୍ଟା ବାହାରକରି ଦେଖିଲି, କିଛି ଖୁଚୁରା ପଇସା ଆଉ ପାଞ୍ଚ ଟଙ୍କାର ଖଣ୍ଡିଏ ନୋଟ । ନୋଟ୍ଟି ବାହାର କରି ଅନ୍ଧ ହାତରେ ଦେଇ କହିଲି—"ମାଷ୍ଟର ବାବୁ । କିଛି ମନେ କରିବେ ନାହିଁ ।"

Digitized by srujanika@gmail.com

"କଅଣ ଏଇଟା ରମୂ ବାବୁ ?"

"କିଛି ନାହିଁ, ପାଞ୍ଚ ଟଙ୍କାର ଖଣ୍ଡିଏ ନୋଟ ।"

ଅଭି ବ୍ୟସ୍ତ ହୋଇ କହନ୍ତି—"ଅହା ହା । ଅ-ଅ-ଅଠଣି ତାହାଙ୍କୁ—ଦ-ଦ......" ।

ଅଭିର ହାତକୁ ଚୁପିଧରି କହିଲି—"ନା, ନା, ନବାକୁ ହେବ, ତା ନ ହେଲେ ମୋ ମନରେ ଭାରି ଦୁଃଖ ହେବ ।"—ହାତ ଛାଡ଼ିଦେଲି । କହିଲି—"ଯାଆନ୍ତୁ ମାଷ୍ଟରବାବୁ । ମନେ ରଖିଥିବେ ।" ଆଉ କିଛି କହିପାରିଲି ନାହିଁ । ମୋ ଗଳା ରୁଦ୍ଧ ହୋଇଆସିଲା । ଚାହିଁ ଦେଖିଲି, ମାଷ୍ଟରର ଆଖିରେ ଅହୁରି ଦୁଇଟୋପା ଲୁହ । ମନେ ତାର ଯାହା କହିବାର ଥିଲା ସେ କହିଗଲା—ସେହି ଦୁଇଟୋପା ଲୁହଦ୍ୱାରା ।

ଟ୍ରେନ୍ ପ୍ଲାଟଫର୍ମ ବାହାରକୁ ଚାଲିଗଲା—ସଂସାରର ଦଣ୍ଡି ହେୟତମ ଦୁଃଖୀଲୋକଙ୍କୁ କୋଳରେ ଧରି । ତା ପରେ ଟ୍ରେନ୍‌ଟା ବାଙ୍କ ପଛଆଡ଼େ ଅଦୃଶ୍ୟ ହୋଇଗଲା । ଜଡ଼ ପଦାର୍ଥ ହେଲେ ମଧ୍ୟ ତାର ହୃଦୟ ଅଛି, ତେଣୁ ଏହି ଦୁହିଙ୍କ ପରି ଶତ ଶତ ନିରାଶ୍ରୟଙ୍କୁ ବୁକୁରେ ସ୍ଥାନ ଦେବାକୁ ମଧ୍ୟ ତାକୁ ବାଧୁନାହିଁ । ବାଧେ କେବଳ ତାଙ୍କୁ, ଯେଉଁମାନେ ସବୁ ବୁଝିପାରନ୍ତି କିନ୍ତୁ କିଛି କରିପାରନ୍ତି ନାହିଁ—କିଛି କରିବାର ଇଚ୍ଛା ମଧ୍ୟ ତାଙ୍କର ନାହିଁ ।

ବାହାରକୁ ଆସିଲି । କିଛି ସୁଖ ଲାଗୁ ନ ଥିଲା । ଜ୍ୟୋତ୍ସ୍ନାରାତି । ବସିଲି ଯାଇ ସମୁଦ୍ର କୂଳରେ । କାନରେ ବାଜିଲା ସେଇ ଚିରନ୍ତନ କାନଅତଡ଼ା ଫଟାଇବା ଗର୍ଜନ । କିନ୍ତୁ ସେଆଡ଼େ ମୋ ମନ ନ ଥିଲା । ଭାବୁଥିଲି ସେହିମାନଙ୍କ କଥା—ଯେଉଁମାନେ ଅନ୍ଧକାରରେ ଶତ ଚେଷ୍ଟା କଲେ ମଧ୍ୟ ପଥ ପାଆନ୍ତି ନାହିଁ—ଯାହାଙ୍କର ନାହିଁ

Digitized by srujanika@gmail.com

ଅଣାର କ୍ଷୀଣ ଅଲେଖରେଖା—ଢେଉଁମାନଙ୍କର ଶିଖର ଚୂଡ଼ାଙ୍କ ଉପର ଦେଇ ଅତ୍ୟାଗ୍ରହୀ ଧନିକ ଦଳ ଚାଲିଯାଆନ୍ତି । ସେମାନଙ୍କର ନ ଥାଏ ଟିକିଏ ଦୟା, ମାୟା, ଅନୁଶୋଚନା ।

ଛୋଟ ଛୋଟ ଢେଉଗୁଡ଼ାକ ମୋ ପାଦ ପାଖରେ ଆସି ଭାଙ୍ଗି ପଡ଼ୁଥିଲେ, ଫେରିଯାଉଥିଲେ, ପୁଣି ଫେରି ଆସୁଥିଲେ । ମୋର ମନେହେଉ, ମୋ ପାଦତଳେ ଯେପରି ଏମାନେ ତାଙ୍କ ମୁଣ୍ଡ ପିଟି ମରୁଛନ୍ତି ଟିକିଏ ଆଦର ସୋହାଗ ପାଇବାପାଇଁ । କ୍ଷତବିକ୍ଷତ-ହୋଇ ଫେରି ଯାଉଛନ୍ତି, କିନ୍ତୁ ମନ ବୁଝୁନାହିଁ—ଫେରିଆସୁଛନ୍ତି ପୁଣି ନୂତନ ଆଶା ନେଇ । ଠିକ୍ ତ । ଏହାହିଁ ତ ଜଗତର ନିୟମ । ହତାଶ ହୋଇ ବିଚରା ଢେଉଗୁଡ଼ାକ ଫେରିଯିବେ ମୋ ପାଦପାଖରୁ । ବିଚାର କଅଣ ? ଯେଉଁମାନେ ଗରିବ, ନୀଚ-ସ୍ତରର—ନବ ସୃଷ୍ଟିରେ ଯେଉଁମାନେ ଅଧିକାର କରିଛନ୍ତି ସବୁଠୁ ନୀଚଶ୍ରେଣୀ—ସେମାନେ ଏହିପରି ତ ଫେରିଯାନ୍ତି ଧନୀର ଦୁଆରୁ ଅପମାନ, ଧିକ୍କାର, ଗୋଇଠା ମାଡ଼ ଖାଇ—ଆଖିରୁ ଲୁହର ଲହର ଗଡ଼େଇ—ଅଭିଶପ୍ତ ଜୀବନର ପୂତଗନ୍ଧମୟ ବୋଝାକୁ ବୋହି ବୋହି ।

# ପତାକା ଉତ୍ତୋଳନ

## ଲେଖକ—ଶ୍ରୀ ସୁରେନ୍ଦ୍ର ମହାନ୍ତି

[ କଟକ ଜିଲ୍ଲା ଅନ୍ତର୍ଗତ ପୁରୁଷୋତ୍ତମପୁର ଗ୍ରାମରେ ୧୯୨୨ ମସୀହାରେ ଲେଖକଙ୍କର ଜନ୍ମ । ଶିକ୍ଷାନ୍ତ ପରେ ଲେଖକ ସାଧାରଣ ରାଜନୀତି କ୍ଷେତ୍ରରେ ପ୍ରବେଶ କଲେ । ଶୃଙ୍ଖଳିତ ଏବଂ ଝଙ୍କୃତ ଶବ୍ଦ ସାହାଯ୍ୟରେ କ୍ଷୁଦ୍ର ଗଳ୍ପ ଲେଖିବାପାଇଁ ଲେଖକଙ୍କର ସୁନାମ ଅଛି । ତାଙ୍କର ପ୍ରକାଶିତ ଗଳ୍ପ ପୁସ୍ତକମାନଙ୍କ ମଧ୍ୟରେ କୃଷ୍ଣଚୂଡ଼ା, ମହାନଗରୀର ରାତି, ରୁଟି ଓ ଚନ୍ଦ୍ର ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ । ଏତଦ୍‌ବ୍ୟତୀତ ଲେଖକ ସମାଲୋଚନା ସାହିତ୍ୟ ରଚନା ନିମିତ୍ତ ପ୍ରସିଦ୍ଧ ।

'ପତାକା ଉତ୍ତୋଳନ' ଗଳ୍ପଟିରେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ଏକ ସୂକ୍ଷ୍ମ ଚିତ୍ର ପ୍ରଦତ୍ତ ହୋଇଅଛି । ବୃଦ୍ଧସ୍ତ, ଅତୀତ ଯୌବନରେ ଯେଉଁ କର୍ମୀବୃନ୍ଦଗଣ ସ୍ୱଦେଶର ମୁକ୍ତି ସଂଗ୍ରାମ ବ୍ୟପଦେଶରେ ଇଂରେଜ ଶାସକମାନଙ୍କର ପଦଲେହନ କରୁଥିଲେ, ତାହାଙ୍କର ପୁତ୍ର ଓ ପୌତ୍ରମାନେ କିପରି ଦେଶର ମୁକ୍ତି ଆନ୍ଦୋଳନରେ ଅଗ୍ରଣୀ ହୋଇଥିଲେ ଏବଂ ତ୍ୟାଗ ସ୍ୱୀକାର କରିଥିଲେ ତାହାର ଆଭାସ ଏହି ଗଳ୍ପଟିରେ ମିଳିଥାଏ । ]

ରାୟବାହାଦୁର ଶ୍ରୀ ସୋମନାଥ ମହାପାତ୍ର, ଅବଃ ସିଃ (ରିଟାୟାର୍ଡ) ସିଃ ବିଃ ଇଃ, ଓଃ ବିଃ ଇଃ, କେଃ ସିଃ ଆଇଃ ଇଃ ଙ୍କ

Digitized by srujanika@gmail.com

ଆଖିରେ ଘୁଇନିଦ ଲାଗିଆସିଛି । ରାତି ସେତେବେଳକୁ ବାରଟାର ପାଖାପାଖି । ହଠାତ୍ ଶଙ୍ଖ, ଘଣ୍ଟ, ହୁଳହୁଳି ଓ ତୋପର ମିଳିତ ଧ୍ୱନିରେ ତାଙ୍କର ଘୁଇ ନିଦ ଭାଙ୍ଗିଗଲା । ଆଖି ମଳି ମଳି ସେ ବିଛଣା ଉପରେ ଉଠି ବସିଲେ । ରାତିର ଶାନ୍ତ, ନୀରବ ମୁହୂର୍ତ୍ତ "ଜୟ ସ୍ୱାଧୀନ ଭାରତ କି ଜୟ"ର ଜୟଧ୍ୱନି ଭିତରେ କ୍ଷୁବ୍ଧ ଓ ଚଞ୍ଚଳ ହୋଇ ଉଠିଲା ।

ରାୟବାହାଦୁର ବିଛଣା ଛାଡ଼ି ଉଠିଲେ । ବାହାରେ କୋଳାହଳ କ୍ରମେ ବଢ଼ୁଛି । ରାୟବାହାଦୁର ଗୋଟି ଗୋଟି କରି ଘରର ଝରକା କବାଟ ବନ୍ଦ କରିଦେଲେ ।

ଝରକା କବାଟ ବନ୍ଦ କଲେ ସେ କୋଳାହଳ ରୁଦ୍ଧ କରି ହୁଏନା । ରାୟବାହାଦୁର ଦୁଇ କାନରେ ଦୁଇଟି ଅଙ୍ଗୁଳି ଗୁଞ୍ଜି ଧରିଲେ । ତଥାପି ସେ କୋଳାହଳରୁ ନିଷ୍କୃତି ନାହିଁ । ବନ୍ଧୁକର ଗୁଳିପରି ଜୟଧ୍ୱନିର ସେ ଶବ୍ଦ ଯେପରି ବୃଦ୍ଧ ରାୟବାହାଦୁରଙ୍କର ପ୍ରତ୍ୟେକ ଜୀର୍ଣ୍ଣ ଅସ୍ଥିଖଣ୍ଡ ଚୂର୍ଣ୍ଣ କରି ଦେଉଛି ।

ରାୟବାହାଦୁର କ୍ଷିପ୍ର ପରି ଘରର ବନ୍ଦ ଝରକା କବାଟ-ଗୁଡ଼ାକ ଖୋଲି ଦେଲେ । ବାହାରର କୋଳାହଳ ଝଡ଼ପରି ଘର ଭିତରର ପ୍ରତ୍ୟେକ କୋଣ ଥରାଇ ଦେଇଗଲା ଯେପରି ।

ରାୟବାହାଦୁର ଝରକା ବାଟେ ତଳର ରାସ୍ତାକୁ ଚାହିଁଲେ । ରାସ୍ତାରେ ଜୟଧ୍ୱନି କରି ଚାଲିଛି ଏକ ବିରାଟ ପଟୁଆର ସ୍ୱାଧୀନ ଭାରତର ତ୍ରିରଙ୍ଗା ପତାକା ଧରି ।

ପଟୁଆରର ଅଗ୍ରଣୀ ତାଙ୍କର ପରଲୋକଗତ ଜ୍ୟେଷ୍ଠ ପୁତ୍ରର ଏକମାତ୍ର ପୁଅ ବିଜୟ । ହାତରେ ତାର ସ୍ୱାଧୀନ ଭାରତର ଏକ ପ୍ରକାଣ୍ଡ ତ୍ରିରଙ୍ଗା ପତାକା ।

Digitized by srujanika@gmail.com

ରାୟବାହାଦୁର ଝରକା ପାଖରୁ ଗୃହଅଫିସ କାନ୍ଥର ସୁଇଚ୍ ମାରି ଆଲୁଅ ଜଳାଇଲେ । ତା ପରେ ତକିଅ ତଳୁ ଗୋଟାଏ ଚାବି ଲେନ୍ଥା ଛାଡ଼ି, ଘରର ଗୋଟାଏ କୋଣରେ ଡ୍ରୟର ଚେଷ୍ଟ୍‌ର ଗୋଟାଏ ଡ୍ରୟର ଫିଟାଇଲେ । ଏଇ ଡ୍ରୟର ଚେଷ୍ଟଟି ତାଙ୍କର ଏକାନ୍ତ ନିଜସ୍ୱ । ଏହାର ଚାବି ସେ ଭୁଲରେ ସୁଦ୍ଧା କାହା ହାତରେ ଦେଇ ନାହାନ୍ତି କେବେ ।

ରାୟବାହାଦୁର ଡ୍ରୟର ଭିତରୁ କାଢ଼ିଲେ ପରଲୋକଗତ ଅରୁଣର ଖଣ୍ଡେ ବହୁଦିନର ଫଟୋଗ୍ରାଫ । ଗୋଟିଏ ଭେଲଭେଟ୍ ବାକ୍‌ସରେ ଅତି ଯତ୍ନରେ ଥିଲା ସେ ଫଟୋ ଖଣ୍ଡିକ ।

ଅରୁଣର ସେଇ ପ୍ରତିଭାଦୀପ୍ତ ଆଦର୍ଶୋଜ୍ଜ୍ୱଳ ଚେହେରା । ପରିଧାନରେ ଅସହଯୋଗକାଳୀ ସତ୍ୟାଗ୍ରହୀର ପୋଷାକ ।

ହଠାତ୍ ମନେହେଲା, ବିଦ୍ୟୁତ୍‌ର ଆଘାତରେ ରାୟବାହାଦୁର ଯେପରି ଟଳି ପଡ଼ିବେ । ତାଙ୍କର କମ୍ପିତ ହାତରୁ ସେ ଫଟୋଟି ତଳେ ଖସି ପଡ଼ିଲା ।

ମୁହୂର୍ତ୍ତକ ଭିତରେ ପ୍ରକୃତିସ୍ଥ ହୋଇ ରାୟବାହାଦୁର ଫଟୋଟି ତଳୁ ଉଠାଇ ନେଇ ପୁଣି ସେ ଭେଲଭେଟ୍ ବାକ୍‌ସ ଭିତରେ ରଖିଦେଲେ । ତାପରେ ଡ୍ରୟର ଭିତରୁ କାଢ଼ିଲେ ଗୁଡ଼ାଏ ମେଡ଼ାଲ୍ ଆଉ ସନନ୍ଦପତ୍ର । ସନନ୍ଦପତ୍ରଗୁଡ଼ିକ ଉପରେ କେମିତି ଗୋଟାଏ ହଳଦିଆ ଅସ୍ତ ବର୍ଣ ମାଡ଼ିଗଲାଣି । ରାୟବାହାଦୁର ମୂକ ପରି ଚାହିଁ ରହିଲେ, ଏକଦା ରଜତୋଜ୍ଜ୍ୱଳ ଅତୀତର ସେଇ ପ୍ରାଣହୀନ ସ୍ମାରକଗୁଡ଼ିକୁ ।

ଗୋଟିଏ ସନନ୍ଦ ରାୟବାହାଦୁର କମ୍ପିତ ହାତରେ ପଢ଼ିବାକୁ ଲାଗିଲେ । ୧୯୨୩ ସାଲରେ ବ୍ରିଟିଶ ସମ୍ରାଟଙ୍କ ଦ୍ୱାରା ସେ ସନନ୍ଦ

Digitized by srujanika@gmail.com

ପଦଉ ହୋଇଥିଲେ ଦରବାର ଉପଲକ୍ଷରେ । ସେଥିରେ ଲେଖାଅଛି···

"ବ୍ରିଟିଶ ସିଂହାସନ ପ୍ରତି ଆପଣଙ୍କର ନିଷ୍ଠା ଏବଂ ଅନୁରକ୍ତି ମହାମହିମ ବ୍ରିଟିଶ ସମ୍ରାଟଙ୍କୁ ମୁଗ୍ଧ କରିଛି । ବ୍ରିଟିଶ ସିଂହାସନ ପ୍ରତି ଏ ଅତୁଳନୀୟ ଅନୁରକ୍ତି ପାଇଁ ଆପଣ ନିଜର······"

ରାୟବାହାଦୁରଙ୍କ ଦୁଇ ଆଖି ଆଗରେ କିଏ ଯେମିତି ଟାଣି ଦେଇଗଲା କୁହୁଡ଼ିର ଗୋଟାଏ ପର୍ଦ୍ଦା । ହାତରୁ ତାଙ୍କର ଖସିପଡ଼ିଲା ସେ ସନନ୍ଦପତ୍ର ।

× × × ×

ସେ ଅଙ୍କକୁ ପଚିଶବର୍ଷ ତଳେ······

ଚଉରିଚଉରାର ବିପ୍ଳବ ପରେ, ଭାରତର ମୁକ୍ତିର ଜାତୀୟ ଆନ୍ଦୋଳନର ଜଡ଼ ନାଡ଼ିଭିତରେ ଜାଗିଛି ଏକ ନୂତନ ସ୍ପନ୍ଦନ । ସନ୍ତ୍ରାସବାଦ ସେଦିନ ଭାରତର ଜାତୀୟ ଆନ୍ଦୋଳନରେ ଆଣି ଦେଇଛି ଏକ ନୂତନ ଅଭିମୁଖ୍ୟ ।

ସେତେବେଳକୁ ପୁଲିସ ବିଭାଗରେ ସେ ଜଣେ ଅସ୍ଥାୟୀ ସବ୍‌ଇନ୍‌ସପେକ୍ଟର ମାତ୍ର ।

× × ×

"ବନ୍ଦେ ମାତରମ୍ ।
ସୁଜଳାଂ ସୁଫଳାଂ ମଳୟଜ ଶୀତଳାମ୍, ବନ୍ଦେ···"

ରାୟବାହାଦୁର ଚମକି ପଡ଼ିଲେ । ଅନ୍ତର କଣ୍ଠରେ ଏ "ବନ୍ଦେ ମାତରମ୍" ସଙ୍ଗୀତର ଆବୃତ୍ତି ଠିକ୍ ଏହିପରି ଶୁଭୁଥିଲା ।

Digitized by srujanika@gmail.com

ରାୟବାହାଦୁର ଛୁଟିଗଲେ ଗୋଲ୍ଡ ଝରଣା ପାଖକୁ । କ୍ରମେ "ବନ୍ଦେ ମାତରମ୍"ର ସେ ଔଦ୍ଧତ୍ୟଭରା ଗାନ, ଅସ୍ପଷ୍ଟରୁ ଅସ୍ପଷ୍ଟତର ହୋଇ ଆସୁଛି ।

× × ×

ତା ପରେ—

"ଅରୁଣ ! ତମେ ଅନ୍ୟାୟ କରୁଛ । ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ତମର ଏ ଦ୍ରୋହାଚରଣ କେବଳ ଅନ୍ୟାୟ ନୁହେଁ—।"

"ମୋତେ କ୍ଷମା କରନ୍ତୁ । ସ୍ୱାଧୀନତା ମନୁଷ୍ୟର ଜନ୍ମଗତ ଦାବି—ଭାରତର ପବିତ୍ରତମ ଦାବି । ଆପଣ କଣ ଭାରତୀୟ ନହନ୍ତି ତାହା ନା ବ୍ରିଟିଶ ସରକାର ଗୋଲାମୀ ଆପଣଙ୍କ ଦେଉଛନ୍ତି..."

"ଅରୁଣ !"

ଚିତ୍କାର କରି ଉଠିଥିଲେ ସେ ଦିନ ସାର ଆର. ସି. ରାୟବାହାଦୁର ଓ. ବି. ଇ., ଏ. ବି. ଇ., କେ. ସି. ଆଇ. ଇ,—

"ଅରୁଣ୍, ଏ ମୋର ଆଦେଶ ।"

"ଅନ୍ୟାୟ ଆଦେଶ ମୁଁ ସ୍ୱୀକାର କରିବି ନାହିଁ କେବେ ।"

ରାୟବାହାଦୁର କ୍ଷିପ୍ର ପଦ ଗୃତ୍ରକରେ ଆଘାତ କଲେ ଅରୁଣଙ୍କୁ ।

ଅରୁଣ ତଥାପି ଅବିଚଳିତ କଣ୍ଠରେ ଜବାବ ଦେଉଥିଲେ—"ଆପଣ ଅନ୍ୟାୟ କରୁଛନ୍ତି ବାପା ।"

ରାୟବାହାଦୁରଙ୍କ ସ୍ତ୍ରୀ ହେମମାଳୀ ବଗିଚାର ଭିତରୁ ଛୁଟି ଆସି, ବାପ ପୁଅଙ୍କ ମଝିରେ ଠିଆହୋଇ ଅନୁଯୋଗର ସ୍ୱରରେ କହିଲେ..."ଏ କଣ କରୁଛ ତୁମେ ?"

Digitized by srujanika@gmail.com

ରାୟବାହାଦୁର ଚିତ୍କାର କରି ଉଠିଲେ—"ଯାଅ ତମେ ! ବାହାରର କଥା ନେଇ ମୁଣ୍ଡ ଖେଳେଇବାରେ ତମର କିଛି ଦରକାର ନାହିଁ । ଯାହାର ଦାନା ଖାଇ ମୁଁ ମଣିଷ, ତାର ନିମକ୍‌ହାରମି ଅସମ୍ଭବ ।"

ଅରୁଣ ପଚାରିଲା......"କାହାର ଦାନା, କାହାର ପାଣି ପବନରେ ମଣିଷ ଆପଣ ? ଭାରତର, ଏଇ ଗୋଲାମ ଭାରତର—ସ୍ୱାଧୀନତା ଯାହାର ଦାବି ।"

ରାୟବାହାଦୁର ଆଦେଶ ଦେଲେ—"ଏଇ ମୁହୂର୍ତ୍ତରେ ଏ ଘରୁ ତମେ ବାହାରି ଯାଅ ଅରୁଣ ! ତମେ ମୋର ତ୍ୟଜ୍ୟପୁତ୍ର ।"

ଅରୁଣ ସେଇଦିନୁ ଯାଇଛି, ଆଜି ଭୁଲରେ କେବେ ଫେରିନି ସୁଦ୍ଧା ।

× × ×

ବାହାରେ କୋଳାହଳ ମୁହୂର୍ତ୍ତକ ପାଇଁ ବନ୍ଦ ହୋଇଯାଇଛି । ଶତର ଲକ୍ଷ କଙ୍କାଳ କଣ୍ଠରେ ସେଇ ଏକଟଣା ହୁଁ ହୁଁ ସ୍ୱରରେ ଶତର ନୀରବ ମୁହୂର୍ତ୍ତଗୁଡ଼ିକ ଅନୁରଣିତ ହୋଇଉଠିଛି ।

ରାୟବାହାଦୁର ଉତ୍କର୍ଣ୍ଣ ହୋଇ ଶୁଣୁଥିଲେ । ଅନେକ ରାତରେ ଏମିତ ଶୁଣନ୍ତି, କେବେ କେବେ ଅଧରାତ୍ରିରେ ଯଦି ନିଦ ଭାଙ୍ଗିଯାଏ ।

କୋଉଠି କିଏ ଚେପରି କାନ୍ଦୁଛି—ସଦ୍ୟ ବିଧବାର ବୁକୁଫଟା ସେ କାନ୍ଦ । ତାଙ୍କର ପୁତ୍ରବଧୂ ଅପର୍ଣ୍ଣା ଏମିତ ଦିନେ କାନ୍ଦିଥିଲା ।

× × ×

ପୁଲିସ ସାହେବର ହୁକୁମ—"ଦେଖ ମହାପାତ୍ର । ତମେ ଭଲ ପାଣ୍ଟିଆର ଲୋକ । ଅନେକ ବଡ଼ ବଡ଼ କଥା ତମେ ଚଳେଇ ନେଇଛ । ଆଜି ଏକ ବିରାଟ ଜନତା ଆସୁଛି ସହରର ଥାନା

କଟଗୁ ସବୁ ଅକ୍ରମଣ କରିବା ପାଇଁ । ସେମାନଙ୍କୁ ସାଫ୍ କରିବାର ଦାୟିତ୍ୱ ତମର ।"

ରାୟବାହାଦୁର ନାଟଗାଯୃ ଭଙ୍ଗୀରେ କୁର୍ଣ୍ଣିଶ ଜଣାଉଥିଲେ ।

ପୁଲିସ ଥାନା ଅଗରେ ବିରାଟ ଜନତା । ସମସ୍ତେ ନିରସ୍ତ୍ର । ସାମନାରେ ସେମାନଙ୍କର ସଶସ୍ତ୍ର ପୁଲିସବାହିନୀ । ବନ୍ଧୁକର ବେୟୋନେଟ୍‌ରେ ଖରାପଡ଼ି ଚକ୍ ଚକ୍ କରୁଛି ।

ରାୟବାହାଦୁର ଚିତ୍କାର କରୁଥାନ୍ତି—ହଟୋ । ହଟୋ ଶାଲେ ଲୋକ୍ ।

ଜନତା କୁହାଟୁଥାଏ—ବନ୍ଦେ ମାତରମ୍ ।

ଗୁଳି ଚାଳନାର ହୁକୁମ ଅସିଲା ।

ତଥାପି ଜନତା ପୃଷ୍ଠଭଙ୍ଗ ଦିଏନା । ବିଶୃଙ୍ଖଳ ଜନତା ଭିତରେ କୁଅଡ଼ୁ ଅରୁଣ ଅସି ଚିତ୍କାର କରି ଉଠିଲା..."ଏ ଗୁଳିମାଡ଼ ଅନ୍ୟାୟ, କିନ୍ତୁ ଅତ୍ମରକ୍ଷା ଅନ୍ୟାୟ ନୁହେଁ । ବନ୍ଦେ ମାତରମ୍—"

ଝଞ୍ଜାକ୍ରାନ୍ତ ସମୁଦ୍ର ପରି ମୂହୁର୍ତ୍ତକ ଭିତରେ ଜନତା ଭୀଷଣ ଭୟଙ୍କର ହୋଇଉଠିଲା ।

ସୋମନାଥ ହାତର ପିସ୍ତଲ ଉପରକୁ ଉଠାଇଲେ । ପିତା ପୁତ୍ରର ଶେଷ ସାକ୍ଷାତ ।

ଅରୁଣ ଅବିଚଳିତ କଣ୍ଠରେ ନିର୍ଦ୍ଦେଶ ଦେଲା—"ଭୟ ନାହିଁ, ଭୟନାହିଁ ଭାଇମାନେ । ଶ୍ରୀ ରାମଚନ୍ଦ୍ର କମଳନୟନର ନୀଳୋତ୍ପଳରେ କରିଥିଲେ ଦେବୀ ଅରାଧନା । ଅମର..."

ଜନତାର କୁହାଟରେ ଯେପରି ଶତସିଂହ ଗର୍ଜନ କରି ଉଠିଲା । କେତେ ଜଣ ଏହା ଭିତରେ ଥାନା ଫ୍ଲାଗଷ୍ଟାଫ୍ ସଙ୍ଗେ ଝୁଲୁଥିବାର ୟୁନିୟନ୍ ଜାକ୍‌କୁ ଛିଡ଼ାଦେଲେଣି ।

Digitized by srujanika@gmail.com

ସୋମନାଥଙ୍କ ହାତରୁ ପିସ୍ତଲ ଖସିଲା । ହାୟ ଭଗବାନ ! ସେ ଗୁହିଁଥିଲେ ଖାଲି ଫାଙ୍କା ଆବାଜ କରିବାକୁ । କିନ୍ତୁ...... କିନ୍ତୁ...ଅର୍କୁଣର ରକ୍ତାକ୍ତ ଶବ ତଳେ ଗଡ଼ି ପଡ଼ିଲା ।

"ଶାବାସ୍ ମହାପାତ୍ର ! ବ୍ରିଟିଶ ସମ୍ରାଟ ଏ ଅତୁଳନୀୟ କର୍ତ୍ତବ୍ୟନିଷ୍ଠାର ମହତ୍ତ୍ୱକୁ ଯଥାଯୋଗ୍ୟ ପୁରସ୍କୃତ କରିବେ ।"

ସେ ଦିନ ରାତ୍ରରେ ଅପର୍ଣ୍ଣାର ହାତରୁ କାଚ ଭାଙ୍ଗିଲା-ବେଳେ...ଉଃ ନାରୀପୁଣି ! ନାରୀପୁଣି !

ତା ପରଦିନ ସୋମନାଥ ହେଲେ ଇନ୍‌ସପେକ୍ଟର ।

ତାପରେ ସୋମନାଥଙ୍କ ଘରକୁ ଅର୍ଥ ଆସିଛି, ପ୍ରତିପତ୍ତି ଆସିଛି, ପଦମର୍ଯ୍ୟାଦା ଆସିଛି, କିନ୍ତୁ ମା ଲକ୍ଷ୍ମୀ ନେଇଛନ୍ତି ଚିର ବିଦାୟ ।

× × ×

ଆଜିକାଲିରେ ଗତ ଏ ସତର ବର୍ଷ ଭିତରେ ସେ ନିଜକୁ ନିଜେ ସମାଦେଇ ଆସିଛନ୍ତି—ଏ ସ୍ୱାମୀହତ୍ୟା, କର୍ତ୍ତବ୍ୟର ସାଧନ, ନିର୍ମମ ହୋଇପାରେ ମାତ୍ର ଅନ୍ୟାୟ ନୁହେଁ ।

ରାୟବାହାଦୁର ହଠାତ୍ ଚମକି ଉଠିଲେ, ଘର ଭିତରେ ଶଙ୍ଖଧ୍ୱନି ଶୁଣି ।

ହେମମାଳୀ ଦୋତାଲା ବାରଣ୍ଡାରେ ବେତେବେଳେ ଗୋଟିଏ ତିରଙ୍ଗା ପତାକା ଉଡ଼ାଇ, ପାଦତଳେ ତାର ଧୂପ ଜାଳି ଶଙ୍ଖଧ୍ୱନି କରୁଛନ୍ତି ।

ରାୟବାହାଦୁର ପାଗଳ ପରି ଯାଇ, ହେମମାଳୀଙ୍କ ହାତରୁ ଝଣ୍ଡା ଛଡ଼ାଇ ନେଇ କହିଲେ, "ଏ କଣ କରୁଚ ତମେ ?"

ହେମମାଳୀ ଚିତ୍କାର କରି ଉଠିଲେ, "ମୋତେ ଛୁଅଁନା, ଛୁଅଁନା ତମେ—ମୋ ଝଣ୍ଡା ଅଛି ମୋ ପେଟରେ ଅଛି ମୋର ହୋଇଲି ।"

Digitized by srujanika@gmail.com

ହେମମାଳୀ ଭେଁ ଭେଁ ହୋଇ କାନ୍ଦ ଉଠିଲେ । ଏମିତ କାନ୍ଦ ସେ କାନ୍ଦ ନାହାନ୍ତି ଗତ ପଚାଶ ବର୍ଷ ଭିତରେ କେବେ ।

ରାୟବାହାଦୁରଙ୍କ ଦୁଇ ଆଖିରେ ମଧ୍ୟ ପାଣି ଜମି ଆସୁଥିଲା । ସେ ତିରଙ୍ଗା ପତାକାଟାକୁ କାଢ଼ି ଫିଙ୍ଗିଦେଇ କହିଲେ—"ଯେଉଁ ୟୁନିୟନ୍ ଜାକ୍ ପାଇଁ ଅଜୁକୁ ଖୁନ୍ କରିଛି, ସେ ପତାକାର ପତନ ଅସମ୍ଭବ ।"

ହେମମାଳୀ ଦର୍ପିତାର କଣ୍ଠରେ କହିଲେ—"ଯୋଉ ପତାକାପାଇଁ ଅଜୁ ପ୍ରାଣବଳି ଦେଇଛି, ସେ ପତାକା ଯୁଗେ ଯୁଗେ ରହିବ ଉଡ଼ନ୍ତ ହୋଇ ।"

ହେମମାଳୀ ଆବେଗ ଓ ଉତ୍ତେଜନାରେ ତଳେ ମୂର୍ଚ୍ଛିତା ହୋଇ ପଡ଼ିଗଲେ । ରାୟବାହାଦୁର ଭିତରକୁ ଯାଇ ଅନେକ ଦିନର ସାଇତା ସିଲ୍କର ଗୋଟାଏ ୟୁନିୟନ୍ ଜାକ୍ ପତାକା କାଢ଼ି ଉଡ଼ାଇଲେ ସେଇ ତିରଙ୍ଗା ପତାକା ସ୍ଥାନରେ ।

ତା ପରଦିନ ସକାଳ—

ସାରା ରାତି ସୋମନାଥଙ୍କର ଆଖିରେ ନିଦ ନାହିଁ । ଅତି ସତର୍କ ପ୍ରହରୀ ପରି ସେ ସାରା ରାତି ଚେଇଁ ବସିଛନ୍ତି ସେଇ ୟୁନିଅନ୍ ଜାକ୍ ପତାକା ପାଖରେ । ତା ତଳେ ହେମମାଳୀଙ୍କର ଦୀପ କେତେବେଳଠୁଁ ଲିଭିଯାଇଅଛି ।

ରାତି ସାରା ସ୍ୱାଧୀନତା ଉତ୍ସବରେ ମାତି ଘରକୁ ଫେରିଲା ବିଜୟ ।

ଘରେ ପାଦଦେଇ ଏ ବିଚିତ୍ର ଦୃଶ୍ୟରେ ସେ ସ୍ତମ୍ଭିତ ହୋଇଗଲା । ମୁହୂର୍ତ୍ତକର ଜଡ଼ତା କଟିଯିବା ପରେ ବିଜୟ ପଚାରିଲା—

Digitized by srujanika@gmail.com

“କେଶ ଦେଖନ୍ତୁ ଜେଜେ ? ଅଉ……ସୁନସୁନ୍ ଡାଲ୍…”

ରୁଦ୍ରବାହାଦୁର କହିଲେ—“ବୁଝିଅ ଶମଶେରଜାଗର ହୋଇ-ଯାଇଛି ବଜ୍ର, କିନ୍ତୁ ମୁଁ ବୁଝେଁ ।”

ବଜ୍ର ଦୃଢ଼ କଣ୍ଠରେ ପ୍ରତିବାଦ କଲା…“ଏ ପତାକା ଏଠି ଲଗାଇପାରିବ ନାହିଁ ଜେଜେ ।”

ରୁଦ୍ରବାହାଦୁର କହିଲେ—“ଅଲବତ୍ ଲଗିବ—ମୁଁ ଲଗାଇବ ଲଗିବ । ଏ ଘର ମୋର ।”

ବଜ୍ର ପତାକାଟାକୁ ଝାମ୍ପି ଉଠାଇ ନେଇ କହିଲା—“ଏ ଦେଶ ଅମର । ଏ ମାଟିରେ ଗୋର୍ଖାଙ୍କ ପାଇଁ ସ୍ଥାନ ନାହିଁ ଏଠି ।”

ସୋମନାଥ ବଜ୍ର ହାତରୁ ସେ ସୁନସୁନ୍ ଡାଲ୍‌କୁ ଛଡ଼ାଇ ନେବାକୁ ଚାହିଁଲେ । ଏତ ଅପ୍ରତ୍ୟାଶିତ ଭାବରେ ସେ କାତର ହୋଇ-ଉଠିଛନ୍ତି ହିଂସ୍ର ଓ ଉନ୍ମତ୍ତ ।

ବଜ୍ର ଦୁଇ ହାତରେ ଠେଲିଦେଲା ତାଙ୍କୁ । ସୋମନାଥ ଛିଟ୍‌କି ପଡ଼ିଲେ ଯାଇ ଦଳ ମଣ୍ଡପର କୋଣରେ । ମୁଣ୍ଡ ଓ ନାକ ଫାଟି ଗଲେ ଦେଖିଲ ଲୋହିର ସ୍ରୋତ ଛୁଟିଲା ।

ବଜ୍ର ତାଙ୍କ ଉପରେ ଝୁଙ୍କିପଡ଼ି, ଉଦ୍‌ବେଗ ଅଧୀର କଣ୍ଠରେ ଡାକିଲା—ଜେଜେ !

ସୋମନାଥ କ୍ଷୀଣ କଣ୍ଠରେ କହିଲେ—“ତୋତେ ଆଶୀର୍ବାଦ କରୁଛି ବଜ୍ର, ମୁଁ ଅନ୍ତତଃ ଶାନ୍ତିରେ ମରିପାରିବି ଏଥର । ଏଇ ପତାକାପାଇଁ କେତେ ରାଜ୍ୟ ଉଚ୍ଛନ୍ନ ହୋଇଛନ୍ତି । କେତେ ଯୁଦ୍ଧ ଓ ରକ୍ତପାତ ନା ଘଟିଛି । ଏଇ ପତାକାପାଇଁ ନିଜ ହାତରେ ମୁଁ ବଳିଦେଇ ସାରିଛି ଅରୁଣକୁ । ଏଇ ପତାକାପାଇଁ କୁ ତୋର ବୁଢ଼ା ଜେଜେକୁ ମଧ୍ୟ ଆଘାତ କରିଲୁ ।—ଅଥଚ ଭାବୁଛି, ଏ

Digitized by srujanika@gmail.com

ପତାକା କଅଣ—ଖଣ୍ଡେ ରଙ୍ଗିନ୍ କନା—ରଙ୍ଗ ଗୁଢ଼ସିଦ୍ଧ ଭାବ । ତଥାପି ତୋର ପତାକାର ଜୟହେଉ । ନେହ...”

ପାଟି ପଡ଼ିଗଲା । ଅଗ୍ନି ବୃଷ୍ଟି ଶେଷ ହୋଇ ଆସୁଛି । ଦୁଲଜଣ ଗୃହର ମୁମୂର୍ଷୁ ସତ୍ୟବାଦୀଦଳଙ୍କ ଠେକା ନେଇଗଲେ ଉପରକୁ ।

ବିଜୟ ପ୍ରାଣହୀନ ପାଷାଣ ପରି ଗୃହଁ ରହିଥାଏ ପ୍ରଜ୍ୱଳର ସୂର୍ଯ୍ୟୋଦ୍ଦୀପ୍ତ ଆକାଶଆଡ଼େ । ସ୍ୱଚ୍ଛ ଆକାଶର ମେଘହୀନ ସୁନୀଳ ପୃଷ୍ଠଭୂମିରେ ସ୍ୱାଧୀନ ଭାରତର ତିରଙ୍ଗା ପତାକା ଉଡ଼ୁଛି ଫରଫର ହୋଇ । ( ଅଗଷ୍ଟ, ୧୯୪୭)

Digitized by srujanika@gmail.com

# ଯାତ୍ରା-ମଙ୍ଗଳ

ଲେଖକ—ଶ୍ରୀ ରାଜକିଶୋର ରାୟ

[ ପୁରୀ ଜିଲ୍ଲାର ଛତାବର ଗ୍ରାମରେ ୧୯୧୮ ମସିହାରେ ଲେଖକଙ୍କର ଜନ୍ମ । ଶିକ୍ଷାଲାଭ ପରେ ଲେଖକ ଅଧ୍ୟାପକ ରୂପେ ନିଯୁକ୍ତ ହୁଅନ୍ତି । ବାଲ୍ୟଜୀବନରୁ ସାହିତ୍ୟ ପ୍ରତି ଆକୃଷ୍ଟ ହୋଇ ଧାରାବାହିକ ଭାବରେ ବହୁତ ପତ୍ରପତ୍ରିକାମାନଙ୍କରେ କ୍ଷୁଦ୍ର ଗଳ୍ପ ଲେଖିଛନ୍ତି । କ୍ଷୁଦ୍ରଗଳ୍ପ ଲେଖକ ହିସାବରେ ତାଙ୍କର ବିଶେଷ ପ୍ରତିଷ୍ଠା ଅଛି । ଅଭିଜାତ୍ୟପୂର୍ଣ୍ଣ ଭାଷାଶିଳ୍ପରେ କାହାଣୀ ରଚନା କରିବା ତାଙ୍କର କୃତିତ୍ୱ । ତାଙ୍କର ପ୍ରକାଶିତ ଗଳ୍ପ ପୁସ୍ତକ ମାନଙ୍କ ମଧ୍ୟରେ ନୀଳଲହରୀ, ବିକଚ ଶତଦଳ, ଜୟଶ୍ରୀ, ବନଜ୍ୟୋତ୍ସ୍ନା, ଅଶୋକଚକ୍ର, ଜୟଶଙ୍ଖ, ଶୋଣିତ କାବ୍ୟ, ମନର ମୃଣାଳ ପ୍ରଭୃତି ଉଲ୍ଲେଖ-ଯୋଗ୍ୟ ।

ସଂକଳିତ 'ଯାତ୍ରା-ମଙ୍ଗଳ' ଗଳ୍ପଟିରେ ଲେଖକ ସହର ଏବଂ ଗ୍ରାମର ଏକ ତୁଳନାତ୍ମକ ଚିତ୍ର ପ୍ରଦାନ କରିଛନ୍ତି । ଅବହେଳିତ ପଲ୍ଲୀ ପ୍ରତି ଶିକ୍ଷିତ ଯୁବକମାନେ ନଜର ଦୃଷ୍ଟିପାତ କରୁନାହାନ୍ତି, ମାତ୍ର ସେମାନେ ଯତ୍ନ କଲେ ପଲ୍ଲୀର ଉନ୍ନତି ସାଧିତ ହୋଇ ପାରିବ, ଏହାହିଁ ଗଳ୍ପଟିରେ ସୂଚିତ ହୋଇଅଛି । ]

ଗାଁ ନାଁ ଭଦ୍ର ଲାଭ ନାହିଁ ।

ଜନବସତିର ପଦ୍ମମଳ ଓ ସ୍ୱାସ୍ଥ୍ୟଦାର ବାସନ୍ତୀ ମଳୟ, ବନାନ୍ତ ସୂର୍ଯ୍ୟ, ଶ୍ରାବଣର ନୀରଧାରା, କୋଇଲିର କୁହୁକେଣ୍ଡ

Digitized by srujanika@gmail.com

ଗୋଟିଏ ଅପ୍ରତିହତ ନାଗରିକ ନିଷ୍ଠୁରତାରେ କେଉଁଠାକୁ ଅଚଳ ହୋଇ ଯାଇଛି । ଭୁଲ-ଫାଙ୍କାର କିମ୍ବା ବାରଦ୍ୱାର-ଭୁଲ ଯୋଗୀର ଗାଡ଼ିରେ ପଶ୍ଚିମର ଶିଳ୍ପାନତାର ମୋହ—ମୂର୍ଚ୍ଛନା ପ୍ରତିଫଳି ଯାଉଛି । କିଏ ବା ଶୁଣୁଛି ? କିଏ ବା ବୁଝୁଛି ?

ସହର—। ସହର—। ବୃଣସ୍ୱାଦ ଚାଖିବା ପାଇଁ ମାଛି ପଲର ଅନାଦରୁ ବାଲି ଅନାଦ ପାର ବାଳୁ ସେହି ସହରକୁ ଧାଇଁଛି ଧନୀ, ଧାଇଁଛି ମାନୀ । ଜୀବନର ଷାଠିଏ ବର୍ଷ ଉପରେ ଶୋଇ ମୃତ୍ୟୁର ତପସ୍ୟା କରିବାକୁ ଚାହୁଁଛି ରୂପସୀ ବାରବନିତା ସେଇ ସହରକୁ । ସେଠି ହସୁଛି ଧର୍ମଶାଳା, ରହୁଛି ପୂର୍ଣ୍ଣ ବିପର୍ଣୀ ।

ଗହଳିଆ ଅଖୁକ୍ଷେତ, ପୁଣି ଅତି ସୁନ୍ଦର ଗାଁର ଉପାନ୍ତରେ ଉମାଣ ଜମିରେ ଅଖୁ ଫଳେଇଛି ମକରନ୍ଦ । ମକରନ୍ଦ ଜାତିରେ ଅଚ୍ଛୁଆ, କିନ୍ତୁ ଯେତେବେଳେ ଗ୍ରାମ ଜୀବନରେ ବୁଲିବା ବୁଢାଳିଆ ମାଂସ ପେଶୀ ନରେଇ, ନାକ ଫୁଲେଇ ଦଉଡ଼ା ହାବୁଡ଼ିଆ ପଦ ଟାଣି ନେଇ ଅଖୁକ୍ଷେତ ମଝିରେ ସେ ଛିଡ଼ା ହୋଇଯାଏ ସେତେବେଳେ ଅଖୁ ଛୁଏଁ ମକରନ୍ଦକୁ ମକରନ୍ଦ ଛୁଏଁ ଅଖୁ ବୁଦାକୁ । ଏ ମିଳନରେ ବାରଣ କରିବାକୁ ନ ଥାଏ ସମାଜର ସ୍ଥାନାଧିପତି । ପଣ୍ଡିତ ମକରନ୍ଦକୁ ଛୁଏଁ ନାହିଁ ସତ, କିନ୍ତୁ ଚେଷ୍ଟା ହୋଇଥାଏ ଗାଲିସି ପତ୍ରପାଙ୍କରେ ଯାହାର ରକ୍ତର ବର୍ଣ୍ଣ ସବୁଜାଳୀ ଶ୍ରେଣୀରେ ନିତ୍ୟପ୍ରତି ଉପାସିତ ଭଦ୍ରଲୋକର ରକ୍ତର ବର୍ଣ୍ଣ ସହିତ ସାମ୍ୟ ରଖି ପାରୁଛି, ତାର ଫସଲ ପାଏ ଶ୍ୟାମଳା ପୃଥିବୀ । ସେଇ ତାର ଉପାସକ, ନିତି ପୂଜାରୀ ।

ମକରନ୍ଦ ଉପରକୁ ଚାହିଁଲା । ନିରାଟ ଖରା । ତାକୁ ଘୃଣା କରୁଛି । ଦୂରରୁ ଉପରୁ ଡାକିଲା—

"ଯମୁନା, କାହିଁ ହେଲୁ ?"

ଗଛ ଗହଳରେ ହୁଡ଼ାର ଅନ୍ୟ ପ୍ରାନ୍ତ ଅଦୃଶ୍ୟ ରହିଯାଇଛି । ଦୃଶ୍ୟମାନ ଚକ୍ରବାଳର ଗୋଟାଏ ପ୍ରାନ୍ତରେ ଲାଗି ରହିଛି ଦୁଇ ଖଣ୍ଡରେ ସନ୍ଧ୍ୟାମାନ ମଞ୍ଜିକଣ୍ଠୀ ରୂପର ଦୁଇଖଣ୍ଡ ମେଘ ।

ଯମୁନା ! ସେଇ ଅଠରରେ ଅଟକି ରହିଛି । ବୟସ ଯେମିତି ତାକୁ ଛାଡ଼ିବାକୁ ଚାହୁଁନି । ଯେଉଁ ତନୁରେ ଲାବଣ୍ୟର କାନ୍ତି-ପାଟବ ଆହୁରି ଖରି ହୋଇ ଉଠୁଛି ସେଠୁ ବୟସ ଖସିଯିବ କିପରି ? ପୁଣି ଅଛି ନାକରେ ଫେଣ୍ଡିଗୁଣାଟିଏ, ବାହୁରେ ବାହୁଟି ପିତ୍ତଳ ସଜ, ନାଗରେ ନଖପଡ଼ି ଲମ୍ବା, କପାଳରେ ଗୁଣ୍ଡିଚୋରାକର ଟିକିଲି ।

"ମତେ ଏ ପବନ କଣ ରଖେଇ ଥୋଇଦେଇଛି ? ତମେ ଆସ, ଏଇନାଗେ ହୋଇଯିବ ଯେ ।"

ଆଜି ଷେଠ-କାଉର ପର୍ବ । ନୂଆ ଅଖୁ ଦୋଳୁଅରେ ରନ୍ଧା ଷେଠକାଉ ଖାଇବେ ତୁହେଁ ଅଭ ଶୁଭ ମନାସିବେ ଯିମିତ ବରଷ ବରଷ ଧରି ଏଇଭଳି ଷେଠ ହେଉ—ମା ଲକ୍ଷ୍ମୀ ସୁଦୟା କରନ୍ତୁ ।

ପ୍ରଥମେ ଶୁଭଲ୍ଗ ମଇଁଷି ବେକର ଟିପେଇ ଶବ୍ଦ ଭଲ । ପରେ ଟିକିଏ ନିକଟ ହୋଇ ଅସିବାରୁ ମକରନ୍ଦ ବୁଝିପାରିଲା ଏ ଟିପେଇ ନୁହେଁ, ବଳଦ ବେକର ଘଣ୍ଟି । ଗାଡ଼ି ପଛେ ଗାଡ଼ି । ଗ୍ଲେଟବଗ୍ମ ଅମ୍ବତୋଟା ଶଗଡ଼ ଗୁଳା ଉପରେ ବେକ ହଲେଇ ଗୁଲ୍‌ଛନ୍ତି ବଳଦ । ଅଗ ଗାଡ଼ି ଦଶଖଣ୍ଡ ଡାଟ, ପଛ ଦଶଖଣ୍ଡ ଗାଡ଼ି ଓଦର ।

ମକରନ୍ଦ ବଟୁଅରୁ ଗୁଅକାତି ଖଣ୍ଡି ବାହାର କରୁ କରୁ କହିଲା—

"ଯମୁନା, ଅଜି ଅଭ ସାଥିନ୍ତେ ଅଇଲେ କେ !"

'ଏଁଠେ ?'

Digitized by srujanika@gmail.com

"ହଁ ଦେଖୁନୁ, ଦଶ ଦଶ ଖଣ୍ଡ ଗାଡ଼ି । ଗାଈ, ବାଛୁରୀ-ହାଣ୍ଡି, ପଥୁଲି, ଗୁଡ଼ ମାଠିଆ, ପାଗ୍ ଖୁଣ୍ଟ, ମେଞ୍ଚ, ଚଟ୍ଟାଣ, ଖଟ, ପଲଙ୍କ, ପିଲାଙ୍କ ଠେଲାଗାଡ଼ି ଭଳିଆ କେତେ କଅଣ ।"

ଯମୁନା ଅବାକାବା ହୋଇ କହିଲା—"ଭଲେ ମାଆ, ଇଏ କଅଣ ଘର ଭାଙ୍ଗି ପଳେଇ ଆସିଲେକି ? ଆମ ଗାଁରେ—ଆଜି ପୁଣି କୁଳମାଳତୀ ଝିଅ—ମୋ ବଉଳ ନାଁ କମିତି କହିବ ମ—ସେ ଯୋଉ ଗାଁରେ ବାହା ହୋଇଛି ସେ ଗାଁରେ ସିନା ବାଡ଼ ଠାକୁରାଣୀ ଭଳି ହେଲେ ଲୋକେ ଗାଁ ଛାଡ଼ି ପଳେଇ ଯାଆନ୍ତି—ଆଜି ଇଏ କଅଣ ମ । କଟକ ସହରରେ କଣ ଠାକୁରାଣୀ ହୁଅନ୍ତି ?"

ମକରନ୍ଦ ସଉକୁ ସତ ବୁଝୁଛି କଥାଟା କଣ । ଅଭି ସାଅନ୍ତେ ପନ୍ଦର ବରଷ ହେଲା ଗାଁ ମାଡ଼ି ନଥିଲେ । କହିଲା—

"ଅଲେ, ସେତ ପନ୍ଦର ବରଷ ହେଲା ଗାଁ ମାଡ଼ି ନାହାନ୍ତି । ଯେତେବେଳେ ମୋତେ ପନ୍ଦର ଷୋହଳ ବର୍ଷ ହୋଇଥିଲା ରଥପୁର ପୋଖରୀ ଗୋଳରେ ମୁଁ ମାଛ ଧରୁଥିଲି, ସେତେ-ବେଳେ ତାଙ୍କୁ ଦେଖିଥିଲି । ସେତିକି ତ ଦେଖା । ନୂଆ ବାହା ହେଇତ ଯାଇଛନ୍ତି କଟକ, ଆଉ ଫେରି ନଥିଲେ ।"

ବାଲିଗୁଡ଼ା ତଳ ଚୂଲିରୁ ଜାଳ ଅଣିବା ଖଣ୍ଡିକ ଓହ୍ଲେଇ ଅଣୁ ଅଣୁ ଯମୁନା କହିଲା—"ତାଙ୍କ ଘରବାଲା କେମିତି ମ ?"

"ତୁ କଅଣ ବୋହୂ ହୋଇ ସେତେବେଳକୁ ଆସିଥିଲୁ ଯେ ଜାଣିବୁ ? ପଠାଣ-ପିଠା ଜାମୁଗଛ ଉପରେ ଚଢ଼ି ପିଲାବେଳେ ଛତେ କଏ କୋଳି ପାରି ଦେଉଥିଲା ? ପରିହାସରେ ସବୁ ମତେ ବାହା ହବୁ କି ନାହିଁ ପଚାରିବାରୁ ମତେ କହୁଥିଲୁ—'ବାଡ଼ପଡ଼ା !'

ଯମୁନା ଜିଭ କାଢ଼ି ଏକାଭଳି ।

Digitized by srujanika@gmail.com

"କ୍ଷମିତ ଉଲ୍ଲଙ୍ଘଣା ମଣିଷ ମ ? ମୁଁ ଏଇୟା କହୁଥିଲି ?"
ସସ୍ବଗରେ ମକରନ୍ଦ ଧରି ପକେଇଲା ଯମୁନାର ହାତଟି ।

ଅଭିରାମ ବାବୁଙ୍କ ପ୍ରଦକ୍ଷିଣ କରି ଯେଉଁ କେତୋଟି ପ୍ରାଣୀ ଗାଁ ସହୁତ ସବୁ ସଂସର୍ଗ ଛିନ୍ନ କରି ସହରରେ ପ୍ରତିପାଳିତ ହୋଇ ଆସୁଥିଲେ. ସେମାନଙ୍କ ଭିତରେ ଅଭିରାମ ବାବୁଙ୍କର ସହଧର୍ମିଣୀ କୁନ୍ତୀ ଦେବୀ, ବଡ଼ ପୁଅ ପରିତୋଷ, ଝିଅ ନିର୍ମଳା । ପରିତୋଷ ବି. ଏ. ପାଶ୍, ତେଣୁ ବେକାର । କୁନ୍ତୀ ଦେବୀ ଗୋପୀଭ୍ରଷ୍ଟାରୁ ହେଇଁ ବଜାର ସଉଦା ପାଇଁ ଚିଠା ଲେଖିବାରେ ହାତ ପଇଠ କରିଛନ୍ତି, ତେଣୁ ସାହିତ୍ୟ ଓ ଗଣିତ ମଧ୍ୟରେ ଉପଯୁକ୍ତ ଯୋଗାଯୋଗ ସେ ଆଣି ପାରିଛନ୍ତି । ଝିଅ ନିର୍ମଳା ହେଉଛନ୍ତି ସାମାଜିକା ମହିଳା । ତେଣୁ ମହିଳା ସଂଘର ଉନ୍ନତି ତାଙ୍କର ଭାବନାର ବସ୍ତୁ ହୋଇ-ପଡ଼ିଛି । କିନ୍ତୁ ଏ ବୁର୍ଜୁଆ ଜୀବ ସବୁ ଅଜଗରକୁ ଗାଁ ଅଡ଼କୁ ମୁହଁ ଫେରାଇଛନ୍ତି କାହିଁକି ?

ଏଇ ପ୍ରସଙ୍ଗର ଚର୍ଚ୍ଚା ସେଦିନ ଭାଗବତ ଘରେ ବୈଦ୍ୟରାଜ ଭଞ୍ଜ ମିଶ୍ର, ସର୍ପଞ୍ଚ ଧର୍ମା ପଧାନ, ବୃଦ୍ଧ ଯୁଗଳ ମିଶ୍ର ଆଉ ଜଳଧର କମାର ଭିତରେ ଚାଲିଥିଲା ।

ଦୂରରୁ ଅଭିରାମ ବାବୁଙ୍କର ପାଟି ଶୁଭିଲା । ଭାଗବତ ଘର ପିଣ୍ଡା ଉପରକୁ ଚଢ଼ିଯାଇ ସାଆନ୍ତେ କହିଲେ—"ପ୍ରଣାମ ଯୁଗଳ ମିଶ୍ରେ । ଗାଁ ଖବର ସବୁ ଭଲ ତ ?"

ଗାଁର ମାଟିରେ ବୃଦ୍ଧଙ୍କର ଶରୀର ଜନ୍ମ ପାଇଛି, ସେଇଥିରେ ମିଳେଇ ଯିବାପାଇଁ ବି ବସିଲାଣି । ଅଥଚ ସେ ବୁଝି ପାରିଲେ ନାହିଁ ଅଭିରାମ ବାବୁଙ୍କର ଗାଁର କୁଶଳ ପଚାରିବା କଥା ।

Digitized by srujanika@gmail.com

ସେଦିନ ଥିଲା ଆଉ ଶ୍ରାବଣର ସଞ୍ଜ । ସ୍ରାସର ପ୍ରକୋପ କମ୍ପ ଦେଉଥିଲା ତାଙ୍କୁ । ସେହି ବର୍ଷାପାତରେ କଷ୍ଟକ ଦୌଡ଼ି ଯାଇ ମିଶ୍ରେ ଅଭିରାମ ବାବୁଙ୍କୁ ହାତଯୋଡ଼ି କହିଥିଲେ—

“ବାବୁ, ସାରା ବ୍ରାହ୍ମଣକୁଳକୁ ଏ ଅପବାଦ ଲାଗି ଦେଉଛନ୍ତି—ରକ୍ଷାକରନ୍ତୁ । କଣ୍ଠୁ ମିଶ୍ରଙ୍କର ବିଧବା ଝିଅ ଘରୁ ଗୋଡ଼ କାଢ଼ି ଦେଉଛନ୍ତି ଗାଁ ଫାଣ୍ଡି କନେଷ୍ଟବଲର କୁଟିଆରେ । ଆପଣ ଗାଁର ମୁଣ୍ଡ, ପୁଣି ଓକିଲ ।”

କିନ୍ତୁ କାହିଁ ? ସାହାଯ୍ୟ ପରିବର୍ତ୍ତେ ବୃଦ୍ଧ ଶୁଣିଲେ—“ବିଧବାଗୁଡ଼ାଙ୍କୁ ଘରେ ସାଇତି ରଖିଲେ ଏଇଆ ହୁଏ । ଏଥିରେ ନିୟମ କାନୁନ କିଛି ଖାଟିବ ନାହିଁ ।”

ବୃଦ୍ଧଙ୍କର ଆଖି ଜଳପୂର୍ଣ୍ଣ ହୋଇଗଲା । ଜଳଧର ବମାର ସାଥିମାନଙ୍କୁ ବସିବାକୁ ଦେଖେଇ ଦେଇ କହିଲା—“ସାଥିମାନେ ପନ୍ଦର ବରଷ ହେଲା ଗାଁକୁ ଆସି ନ ଥିଲେ । ଭଲ କଲେ ଆସିଲେ ।”

ଅଭିରାମ ବାବୁ ଟିକିଏ ଇତସ୍ତତଃ ହୋଇ କହିଲେ, “ହଁ, ଅଚ୍ଛା ଗାଁରେ ଡାକ୍ତରର ଜରୁରୀ ପ୍ରସ୍ତାବ କଣ ହେଲା ? ଡାକ୍ତରଖାନା ପାଇଁ ମୁଁ ଚେଷ୍ଟା କରିବି । ମୁଁ ଆସିଲାବେଳେ ଦେଖିଲି ମହାଦେବ ପୋଖରୀଟା ଦଳଦଳ ଦଳରେ ଭରି ରହିଛି । ସେଥିରେ କିପରି ସ୍ୱାସ୍ଥ୍ୟ ଭଲ ରହିବ ? କି ବୈଦ୍ୟରାଜ, ନୁହେଁ ? ହେଇଟି ମୁଁ କୋଡ଼ିଏ ଟଙ୍କା ଦେଉଛି । କାଲି ଗାଁବାଲା ସବୁ ମିଳିଯିବା, ପୋଖରୀ ସଫା ହେବ ।”

ଶ୍ରୋତା ଭିତରେ ଏପରି କେହି ନ ଥିଲେ ଯେ ତାଙ୍କର ବକ୍ତୃତା ଖୁବ୍ ଶୀଘ୍ର ବୁଝି ନେଇ ଗୋଟାଏ ମନ୍ତବ୍ୟ ଦେବେ । କେବଳ ବୃଦ୍ଧ ଅଗାଧୁ ମିଶ୍ରେ ‘ନାରାୟଣ’ କହି ହାତଯୋଡ଼ିଲେ । ଆଉ କହିଲେ—“ପ୍ରଭୁ, ଏ କି ପରୀକ୍ଷା ।”

Digitized by srujanika@gmail.com

ଯୋଡ଼ଏ ଧନ ବଢ଼ିଯାଉଛି । ଯମୁନା ବେଢବୋଲି ବାଞ୍ଜିପିଅଏ ଧରି ଫେରି ଅସୁଛି ଗାଁ ଦାଣ୍ଡରେ । ଧନ ଗୋଟାକ-ଯାକର ଖବ୍ର ଖାଇ ମୁହଁ ତାରି କରିଥା ପଡ଼ି ଯାଉଛି । ବୈଦ୍ୟରାଜେ ପିଣ୍ଡା ଉପରେ ବସିଥିଲେ । କହିଲେ—"କାଲେ ଯମୁନା, ଏତେ ଖରାବେଳେ କୁଆଡ଼େ ଯାଇଥିଲୁ ? ଟିକିଏ ପାହାଚ ଉପରେ ବସିଯା । ପାଣି ପିଇବୁ ?"

ଏମିତି କଥା କୋସେଇଁଠୁ ସେ କେବେ ଶୁଣି ନାହିଁ । ପାଣି ଚଳେ ଟେକିଦେବା ଦୂରର କଥା, ଗୋସେଇଁ ଯେ ତାକୁ ପାଟି ଫିଟେଇ ଅକ କଥା କହିଲେ, ସେ ତା ବିଶ୍ୱାସ କରି ପାରିଲା ନାହିଁ । ଯମୁନା ଚଳେ ପାଣି ପିଇଛି କି ନାହିଁ ମୁହଁ ଟେକି ଅଣିଲା । କହିଲା—"ସାଆନ୍ତେ, ଏ ପାଣି କିଆଁ ଏମିତି ଗନ୍ଧଉଛି ?" ବୃଦ୍ଧ ମିଶ୍ରେ ହସି ହସି ବୁଝେଇ ଦେଲେ—"ଅଲେ, ଏ ସବୁ ପଦ୍ମଲୋଚ ବାବୁଙ୍କର କଅଣ । ବଡ଼ିଶ ବୋଲି ଗୋଟାଏ ଔଷଧ ସବୁ ଗାଁ କୂଅରେ ପକେଇ ଦେଉଛନ୍ତି—କୁଆଡ଼େ ଯୋକ ଯୋକ—ରାମ, ରାମ,—ସବୁ ମରିଯିବେ ।"

ଯମୁନାକୁ ସବୁ ନୂଆ ଲାଗୁଥାଏ । ଔଷଧଟି ଟାଣି ଦେଇ ବାଟଟାଟି ସେ ଚାଲିଗଲା ।

ଅଜ ଯୋଡ଼ିଏ ଧନ ବଢ଼ି ଯାଇଛି । ଡାହାଣିଆ ଖବ୍ର ମହଲ ଯାଉନି । ଯମୁନା ମୁଣ୍ଡରେ କାଠ ବୋଝଟିଏ ମୁଣ୍ଡେଇ ଦୁଃଖରୁ ଫେରୁଛି । "ଭାଇ ଦିଅ ସେ କେନ୍ଦୁ ଦଣ୍ଡା—ସେଇ ଯେ ଉପରି ଡାଳରେ ଅଛି ।" ନିର୍ମଳାର ଅଳ ପଦ୍ମଲୋଚ ଭାଙ୍ଗି ନ ପାରି ଯୋଡ଼ିକଯାକ ବଢ଼େଇଦେଲା ନିର୍ମଳା ହାତକୁ । ବେଶି ପାଚିଲାଟିକୁ ନିର୍ମଳା ତୁଣ୍ଡକୁ ପକେଇ ଦେଉଛି, ଯମୁନା ମୁଣ୍ଡରୁ ଝୁମ୍‌କନା କାଠ

Digitized by srujanika@gmail.com

ଫୋଗୁଣ୍ଠା ତଳେ କଣ୍ଢୁଢ଼ ଦେଇ ନିଜ ଅଙ୍ଗୁଳିରେ ନିର୍ମଳା ମୁହଁରୁ ଦରଗ୍ରେବା ବସନ୍ତ କୋଇଲି ଫଳ ବାହାର କରି ଆଣିଲି। ନାହାନ୍ତି ଅସ୍ପୃଶ୍ୟ ଭଳି ପରିଚୋଷ ହୁଁ। କରି ଗଛ ଉପରେ ଗୃହି ରହୁଥାଏ । ଯମୁନା ଦୁଃଖ କରି କହିଲି—"ଦେଇ, କଅଣ କରୁଥିଲ ? ଏ ଯେ କୋଇଲି ବିଷ—ଜୀବନରେ ଅଛି ଥାଅନ୍ତି ?"

ସେହିଦିନଠାରୁ ଯମୁନା ନିର୍ମଳାର ସାଙ୍ଗ । ଗାଁର ମହିଳା ସମିତିର ହେଲି ଯମୁନା ପ୍ରଧାନ କର୍ମୀ ।

× × ×

ଦୋଳଯାତ୍ରା ପର୍ବରେ ବୁଲିଣ ଡାଙ୍ଗାଳ ଭ୍ରୋଜନ ଉଦାରଖି କରୁ କରୁ ବୃଦ୍ଧ ଅଗାଧୁ ମିଶ୍ରେ ଅଭିରାଦୁଙ୍କ ହାତ ଧରି ପଚେରି କହିଲେ—

"ଆପଣଙ୍କର ଏଇ ମନ ଯଦି ନିଜ ଜନ୍ମଭୂମି ପ୍ରତି ଦଶବର୍ଷ ଆଗରୁ ଆସେ ଦେଖି ଥାଅନ୍ତୁ, ତେବେ ଅଜି ଏ ଗାଁ ପୁନା ପାଲିଟି ଯାଆନ୍ତାଣି ।"

ଅଭିରାମବାବୁ ହସି ହସି କହିଲେ—"ମିଶ୍ରେ, ମୋର ବାହାଦୁରୀ ଏଥିରେ କିଛି ନାହିଁ । ଯୁଦ୍ଧ ଅଜି ଗାଁ ଅଡ଼କୁ ସଭିଙ୍କର ମୁହଁ ଫେରାଇ ଦେଇଛି ।"

ବୈଦ୍ୟରାଜ ଭିକ୍ଷ ମିଶ୍ରେ ଭଣିତା କରି ଦେଲେ—"ଗାଁକୁ ଆପଣଙ୍କର ଏ ଯାତ୍ରା ଅତି ମଙ୍ଗଳ ହୋଇଛି ।"

Digitized by srujanika@gmail.com

# ମାଗୁଣୀର ଶଗଡ଼

## ଲେଖକ—ଶ୍ରୀ ଗୋଦାବରୀଶ ମହାପାତ୍ର

[ ଶ୍ରୀ ଗୋଦାବରୀଶ ମହାପାତ୍ର ପୁରୀଜିଲ୍ଲାର ବାଣପୁର ଅନ୍ତର୍ଗତ କୁମାରଙ୍ଗ ଶାସନରେ ୧୯୦୧ ମସିହାରେ ଜନ୍ମଗ୍ରହଣ କରିଥିଲେ । କ୍ଷୁଦ୍ର ଗଳ୍ପ ଲେଖକ ଭାବରେ ଓଡ଼ିଆ ସାହିତ୍ୟରେ ଏହି ଲେଖକ ସୁନାମ ଅର୍ଜନ କରିଛନ୍ତି । କବିତା, ଗଳ୍ପ, ଜୀବନୀ, ଉପନ୍ୟାସ, ଶିଶୁ ପଠନୋପଯୋଗୀ ରଚନା ପ୍ରଣୟନ କରିବାରେ ଲେଖକଙ୍କ କୃତିତ୍ୱ ପରିଲକ୍ଷିତ ହୁଏ । ରୁଷିଆର ପ୍ରସିଦ୍ଧ ଗଳ୍ପ ଲେଖକ ଟଲଷ୍ଟୟଙ୍କ ରଚନା ଶୈଳୀ ଦ୍ୱାରା ଲେଖକ ପ୍ରଭାବିତ ହୋଇଥିବାର ଜଣାଯାଏ । ହାସ୍ୟରସରେ ରଚନାକୁ ପ୍ରାଣବନ୍ତ କରିବା ତାଙ୍କ ଲେଖାର ବୈଶିଷ୍ଟ୍ୟ । ସାମ୍ବାଦିକ ହିସାବରେ ମଧ୍ୟ ତାହାଙ୍କର ଯଥେଷ୍ଟ ପ୍ରତିଷ୍ଠା ଅଛି । ତାହାଙ୍କ କବିତାଗ୍ରନ୍ଥ ମଧ୍ୟରେ 'ହେ ମୋର କଲମ', 'ବାଣ୍ଡଶାଳର ବିପ୍ଳବ' ଏବଂ ଗଳ୍ପସଂଗ୍ରହମାନଙ୍କ ମଧ୍ୟରେ 'ଏବେ ମଧ୍ୟ ବସିଛି', 'ମୁଁ ଦିନେ ମନ୍ତ୍ରୀ ଥିଲି' ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ । ଏହାଛଡ଼ା ସେ ଅନେକ ଉପନ୍ୟାସ, ଜୀବନୀ, ଖଣ୍ଡକାବ୍ୟ ରଚନା କରିଅଛନ୍ତି । ତାଙ୍କଦ୍ୱାରା ଅନୂଦିତ 'ଭକ୍ତିଯୋଗ' ଆଦି କେତେଖଣ୍ଡ ବହି ମଧ୍ୟ ବିଶେଷ ଆଦୃତ ହୋଇଥାଏ । ୧୯୬୫ରେ ଏହାଙ୍କର ବିୟୋଗ ହୋଇ ଯାଇ ଅଛି ।

'ମାଗୁଣୀର ଶଗଡ଼' କ୍ଷୁଦ୍ରଗଳ୍ପଟିରେ ଲେଖକ ପଲ୍ଲୀ ଶ୍ରମିକର ସାଧାରଣ ଜୀବନର ଏକ ମର୍ମସ୍ପର୍ଶୀ ଚିତ୍ର ପ୍ରଦାନ କରିଛନ୍ତି । ]

Digitized by srujanika@gmail.com

ଖଲିକୋଟର ତୁଚ୍ଛଲକ୍ଷ ଲୋକଙ୍କ ଭିତରେ ପ୍ରତିଦିନ ଯିବା ଆସିବା ଚାଲିଛି । କେତେ ସଂସାରରୁ ଯାଉଛନ୍ତି, କେତେ ସଂସାରକୁ ଆସୁଛନ୍ତି । ଏ ଖବର ରଖୁଛନ୍ତି ଗୃହ-ପରିବାର ବା ଆଖପାଖର ଲୋକେ । କିନ୍ତୁ ଯେଉଁଦିନ ମାଗୁଣି ଏ ସଂସାର ଛାଡ଼ି ଚାଲିଗଲା, ସେଦିନ ଖବରଟା ଖଲିକୋଟର ପ୍ରତିପଲ୍ଲୀ ସବୁଆଡ଼େ ବ୍ୟାପିଗଲା । ଯେ ଶୁଣିଲା ସେ ମୁହୂର୍ତ୍ତେ ହେଲେ ନୀରବ ରହି ଦୁଃଖରେ କହିଲା, "ମାଗୁଣି ଚାଲିଗଲା ? ଅହା—ବିଚାରା ଚାଲିଗଲା ।"

ମାଗୁଣି କିଏ ? ଖଲିକୋଟର ସେ ରାଜା ନୁହେଁ, ଏ କଥା ନିଶ୍ଚୟ । ସେ ରାଜ୍ୟର ନେତା ନୁହେଁ, ଏ କଥା ସମସ୍ତେ କହିବେ । ସେ କର୍ମୀ ନୁହେଁ, ଏକଥା ସମସ୍ତେ ଜାଣନ୍ତି । ସେ କେବେ ସତ୍ୟାଗ୍ରହରେ ଯୋଗ ଦେଇନାହିଁ କି ରାଜାକୁ ଖଜଣା ଦେଇନାହିଁ । ତା ବେକରେ କିଏ ଫୁଲମାଳ ଲମ୍ବାଇନାହିଁ କି ସେ କାହା ଗଳାରେ ମାଳା ଲମ୍ବାଇଦେବା ଦରକାର ପଡ଼ିନାହିଁ । ଜନସମୁଦ୍ର ଭିତରେ କରତାଳି ଗହଳରେ ବକ୍ତୃତା ଦେଇନାହିଁ । ସେ କେବଳ କରିଛି ଗୋଟିଏ କାମ—ମୁଣ୍ଡର ଝାଳ ତୁଣ୍ଡରେ ମାରି ଜୀବନ ପଥରେ ଲଢ଼େଇ କରିଛି । ସେ ଲଢ଼େଇ ଦେଶ ପାଇଁ ନୁହେଁ, ଜାତିପାଇଁ ନୁହେଁ, ତାହା ନିଜର ପେଟ ଚାଖଣ୍ଡିକ ପାଇଁ । ତଥାପି ମାଗୁଣିର ମୃତ୍ୟୁ ଖବର ପାଇ ସମସ୍ତେ କହିଲେ, "ଅହା—ବିଚାରା ଚାଲିଗଲା ।"

ଗଡ଼ରେ ପଚାରିଲେ ତ ସମସ୍ତେ କହିବେ ମାଗୁଣି କିଏ, ଦୂର ଜଙ୍ଗଲଡ଼େ ପଲ୍ଲୀଗାଁରେ ମଧ୍ୟ ତାର ପରିଚୟ ମିଳିପାରିବ । ମାଗୁଣି ଖଲିକୋଟର କେହି ନୁହେଁ—ସେ ଜଣେ ଶଗଡ଼ିଆ । ଦୁଇଟା ବଳଦ ଓ ସେ—ଏ ତିନି ମିଶି ଗୋଟାଏ ସଂଘ ଗଢ଼ିଥିଲେ, ଯାହା କି ତୁଚ୍ଛଲକ୍ଷ ଲୋକଙ୍କ ମନକୁ ଛୁଇଁଗଲା ।

Digitized by srujanika@gmail.com

ପ୍ରତିଦିନ ଖଲିକୋଟ ଗଡ଼ରେ ସୂର୍ଯ୍ୟ ଉଦୟ ଓ ସୂର୍ଯ୍ୟ ଅସ୍ତ ହୁଏ । ଘନଘୋର ବର୍ଷାଦିନେ ଲୋକେ ସୂର୍ଯ୍ୟ ନ ଦେଖି ମାଗୁଣୀକୁ ଦେଖି ବେଳ ଜାଣନ୍ତି । ମାଘ ମାସର ଜାଡ଼ରେ ପିଣ୍ଡାରେ ଘୋଡ଼ଢାଙ୍କି ହୋଇ ଲୋକେ ବସିଥିଲାବେଳେ ମାଗୁଣୀ ନିଜ ପରି-ଚିତ ସାଙ୍ଗ ଦୁଇଟିକୁ ଶଗଡ଼ରେ ଯୋଚି ପାହାନ୍ତିଆରୁ ଗୀତବୋଲି ଚାଲିଯାଏ । ଲୋକେ କହନ୍ତି ମାଗୁଣୀ ସେମାନଙ୍କର ଗୋଟାଏ ଘଣ୍ଟା । ବର୍ଷାଦିନେ ବର୍ଷା ଘୁଞ୍ଚିଯାଇପାରେ, ଖରାଦିନେ ଖରା ଥଣ୍ଡା ହୋଇପାରେ, କିନ୍ତୁ ମାଗୁଣୀର ଶଗଡ଼ ଦିନେ ହେଲେ ବନ୍ଦ ହୁଏ ନାହିଁ । ସେ କହେ ରଜାଘରେ ଯୋଡ଼ା ମୋଟରକାର ଅଛି ସତ, କିନ୍ତୁ ତା ପରି ଇଞ୍ଜିନିୟର ନାହାନ୍ତି । ତା ଶଗଡ଼ ରଜାଘର ମୋଟରଠୁଁ ବଳେ । ବାରବର୍ଷର ଅତି ପରିଚିତ ସାଥୀ କାଳିଆ ଓ କପିଳା, ବଳଦ ଉପରେ ସେ ହାତ ମାରି ଅଜାଡ଼ିଦେଲେ ତା ଗାଡ଼ିରେ ପକ୍ଷ ଦିଆହୁଏ । ଯେତେବେଳେ ସେ ଶଗଡ଼ ଉପରେ ବସି ଗୀତ ପଦେ ବୋଲିଦିଏ, "ରାମ ଯେ ଲକ୍ଷଣେ ଗଲେ ମୃଗ ମାରି" ତାର ମୋଟର ଚାଲେ । ସେତେବେଳେ ଶ୍ୟାମଳ ତରୁ ପନ୍ତିରେ, ଗିରି କନ୍ଦର ଭିତରେ ପ୍ରତିଧ୍ୱନି ଉଠେ । ଅର୍ଦ୍ଧସୁପ୍ତ କୁକ୍କୁଟ କୁମ୍ଭାଟୁଆ ତାକୁ ଉତ୍ତର ଦିଅନ୍ତି, ପକ୍ଷୀର କୁଳକୁଳୁବଦନ ଚମକି ଉଠି ଗାଁରେ ଚହଳପକାଇଦିଅନ୍ତି । ଘଡ଼ଘଡ଼ ଶବ୍ଦରେ ଶଗଡ଼ ଚାଲିଯାଏ ଷ୍ଟେସନ ଅଭିମୁଖେ ।

ପଚାଶ ବର୍ଷର ମାଗୁଣୀ ବାରବର୍ଷର ସାଥୀ ବଳଦଙ୍କ ଧରି ଯେତେବେଳେ ଭଡ଼ା ବୋହି ଚାଲେ, ସତୁରି ଅଶୀବର୍ଷ ତଳର କାହାଣୀ ପରି ବହିଯାଏ । ସେ କହେ ଅଗ ତା ନିଜ କଥା— ତାର କେବେ ବାପ ମା ଥିଲେ, ସେ କେବେ ସୁଖରେ ବଢ଼ି ଖଟରେ

Digitized by srujanika@gmail.com

ଶୋଉଥିଲା, ସେ କେବେ ଘରେ ବସି ବୁଝିନେଲା ପେଟପୂରା ଖାଉଥିଲା, ଅଉ ଜଣଙ୍କର ମଧୁର ବଚନ ଶୁଣି ଜୀବନର ସକଳ ଦୁଃଖ ଭୁଲିଯାଉଥିଲା । ସେ ଗଢ଼ିଥିଲା ଗୋଟେ ସ୍ୱପ୍ନରାଜ୍ୟ । ସେ ରାଜ୍ୟରେ ସେ ଥିଲା ରାଜା । ରାଣୀ କରି ଯାହାକୁ ଆଣିଥିଲା,ଜୀବନଟାକୁ ସେ ହସାଇ ହସାଇ ନଚାଉଥିଲା । ତାର ଅଧର ତଳେ ସେ ଅମୃତ ପିଉଥିଲା, ତାର ଗୁହାଣୀ ଭିତରେ ସେ ଜଗତ୍ ଦେଖୁଥିଲା, ତାର ନିଶ୍ୱାସରେ ସେ ସୁବାସ ବାରୁଥିଲା ଓ ତାର ପାଦତଳେ ସେ ଫୁଲ ଫୁଟିବାର ଦେଖୁଥିଲା । କିନ୍ତୁ ସେ ସ୍ୱପ୍ନ ତାର ବେଶୀ ଦିନ ରହିଲା ନାହିଁ । ସ୍ୱପ୍ନମୟୀ ହସି ହସି ଚାଲିଗଲା ଏ ସଂସାରର ସେପାଖକୁ । ଏବାଖେ ଏ ଦୁଇଟି ବଳଦ ଗାଁରୁ ଷ୍ଟେସନକୁ ଓ ଷ୍ଟେସନରୁ ଗାଁକୁ ଦିନକେ ଦୁଇଥର ଯାଇ ତାକୁ ଆର ଜନ୍ମରେ ଭେଟିବାକୁ ଚେଷ୍ଟା କରୁଥିଲା ।

ଶଗଡ଼ ବୋହିଲାବେଳେ ଏ କଥା ସେ ସମସ୍ତଙ୍କୁ ଶୁଣାଇ ବୁଲାଇ ପକାଏ । ନିଜେ ବୁଢ଼ାଟୋପା ଲିହ ନିଜର ଶିର କାନରେ ପୋଛୁଦେଇ ବଳଦ ଉପରେ ହାତମାରି ପୁଣି କହେ ଅଉ ଗୋଟାଏ ଚାଲ । ଲୋକଙ୍କ ବାଟ ସରିଯାଏ, କିନ୍ତୁ ତାର ଗଳ୍ପସରେ ନାହିଁ । ସେ କହେ ତା ଶଗଡ଼ରେ ନ ବସିଛି କିଏ ? ବସି ନ ଥିଲେ ବସି ନ ଥିବେ ଖଲିକୋଟର ରାଜା । କିନ୍ତୁ ଦେବାନ କହ, ମାନେଜର କହ, ଓକିଲ କହ, ମହାଜନ କହ, ଏପରି କି ମହାତ୍ମାଙ୍କ ଭକ୍ତ ପର୍ଯ୍ୟନ୍ତ କହ ସମସ୍ତେ ବସିଛନ୍ତି ତା ଶଗଡ଼ରେ । ଏସବୁ କଥା କହିଲା-ବେଳେ ସେ ଏଡ଼େ ଉତ୍ସାହରେ କହେ ଯେ, ବେଳେ ବେଳେ ବଳଦ ଦୁଇଟା ଠିଆ ହୋଇଗଲେ ମଧ୍ୟ ସେମାନଙ୍କୁ ଅଡ଼ାଏ ନାହିଁ । ଜାଣିପାରିଲେ କହେ—ଏ ପଶୁଗୁଡ଼ାକ ମଧ୍ୟ ଏ କଥା ଶୁଣିବାକୁ କାନଡେରିଛନ୍ତି ।

Digitized by srujanika@gmail.com

ମାଗୁଣୀର ଶଗଡ଼ ଓ ବଳଦ ଗଳ୍‌ପୋଟର ଗୋଟିଏ ବସ୍ତ ଇତିହାସ ନ ହେଲେ ମଧ୍ୟ ସେ ଇତିହାସର କେତେଟା ପୃଷ୍ଠା । ସେ ଇତିହାସ କହେ, ଏ ଶଗଡ଼ ରାଜ୍ୟର ସମସ୍ତଙ୍କି ଚିହ୍ନିଛି । କେତେ ବାଳବିଧବା ଏହାରି ଉପରେ ବସି ଶାଶୁଘରୁ ବାପ ଘରକୁ ଫେରିଛନ୍ତି । କେତେ ସୁହାସିନୀ କୁଳବଧୂ ବାପଘରୁ ଶାଶୁ ଘରକୁ ମଧ୍ୟ ଯାଇଛନ୍ତି । ଖଜଣା ଗଣ୍ଡାକ ଦେଇ ନ ପାରି ଯେଉଁଦିନ ମଣ୍ଡଳ ଗାଁର ଗଦା ରାଉଳ ଜେଲ୍ ଗଲା, ସେଇଦିନ ତା ଘରର ଗୁଣ୍ଡୁଣୀ ମୁଣ୍ଡା ଅଦ ଏଇ ଶଗଡ଼ରେ ଗୁହାହୋଇ ଆସି ରଜାଘର କଚେରୀ ଦୁଆରେ ଜମା ହୋଇଥିଲା । ଯେଉଁଦିନ ବେହାଳିଆ ଗାଁର ମଧୁ ରଥେ ନରହତ୍ୟା ଅପରାଧରେ ଧରାହେଲେ, ସେଦିନ ସେ ଏଇ ଗାଡ଼ିରେ ବସି ଯାଇଥିଲେ । ଏଇ ଗାଡ଼ିରେ ବସି ଓକିଲ୍ ଆସି ରଜାଘର ପକ୍ଷ ନେଇଛନ୍ତି । ଏଇ ଗାଡ଼ିରେ ବଇଦ ନେଉଥାଏ ହାତକଡ଼ା ପଡ଼ି କଏଦୀ ଯାଇଛନ୍ତି । ଏଇ ଗାଡ଼ି ସୁଖ ଦେଖିଛି—ଦୁଃଖ ଦେଖିଛି । ଲକ୍ଷ ବୋହୂ ଏଇ ଗାଡ଼ିର ଶୁଖିଲା ପାଳର ଗନ୍ଧ ଓଦା ହୋଇଯାଇଛି; ହସରୋଳରେ ଏହି ଗାଡ଼ି କେତେ ଭମିଛି ।

ଏଇ ସବୁ କଥା କହି ମାଗୁଣୀ ଯେତେବେଳେ ଗାଡ଼ି ଚଳାଏ, ମନେହୁଏ ମାଗୁଣୀ ଗୋଟାଏ ଜୀବନ୍ତ ଇତିହାସ । ଏପରି ଦଶ ପାଞ୍ଚଟା ଇତିହାସକୁ ଏକାଠି କଲେ ଓଡ଼ିଶାରେ ଗୋଟାଏ କୋଣାର୍କ ତିଆରି ହୁଅନ୍ତା ।

ଦିନେ ମାଗୁଣୀ ଶୁଣିଲା, ତା ଗାଡ଼ିରେ ଆଉ କେହି ବସିବେ ନାହିଁ କାରଣ ସିଂହଘର ଗୋଟାଏ ମୋଟର ବାସ୍ ଆଣିଛନ୍ତି । ଶୁଣିଲାମାତ୍ରେ ସେ ହସି ହସି ଆକାଶ ଫଟାଇ ଦେଲା । କହିଲା—"ମୋଟର ବାସ୍ । ତା କଣ ମୋ କାଳିଆ କପିଳକୁ ଟପି ଯିବ ? ଭଲ କରି ଆହାର ଦେଇ ଯେତେବେଳେ ହାତ ମାରିଦେବି

Digitized by srujanika@gmail.com

ସେବେ କଣ ମୋ ଗାଡ଼ି ଛାଡ଼ି ସେ ଗାଡ଼ିକୁ ଯିବେ ? ଏକଥା ଶୁଣି ସମସ୍ତେ ହସିଲେ ସତ, ମାତ୍ର ସେ ଖାତିର କଲା ନାହିଁ । ଖୁବ ଗୁଡ଼ିଏ ଦିନ ଗଲା । ଦେଖୁ ଦେଖୁ ଗଡ଼ରେ ମୋଟର ବସ ପହଞ୍ଚିଲା । ଲୋକେ କହିଲେ—ଏଥର ମାଗୁଣିର ବ୍ୟବସାୟ ବୁଡ଼ିଲା । ଏତ ବେଳକେ କୋଉଏ ଜଣଙ୍କୁ ଧରି ଘଣ୍ଟାକେ ଚାଳିଶ ମାଇଲ୍ ଯିବ । ମାଗୁଣି କି ତାକୁ ବଳିଯିବ ?

କଥା ସତ । ଦୈତ୍ୟଦାନବ ପରି ଗଡ଼ରେ ମୋଟର ବାସ୍ ଟାକୁ ଦେଖି ମାଗୁଣିର ମନରେ ଛନକା ପଶିଗଲା । ସେ କାନ୍ଦି ପାରିଲା ନାହିଁ ସତ, କିନ୍ତୁ କାନ୍ଦ କାନ୍ଦ ହୋଇ ଭାବିଲା—ସେଦିନ ଯାଉଥିଲି କୋଦଳା ସତ୍ରକୁ । କିଏ କହୁଥିଲେ—କଳି କାଳଠୁଁ ହାତ କାଳ ଭଲ । ତା ହେଲେ ମୋଟର କଳଠୁଁ କଣ ମୋ ଗୋଡ଼ ଭଲ ନୁହେଁ ? ଏତେ ଲୋକ ତ ସତ୍ରରେ ବସି ଶୁଣୁଥିଲେ, ସେମାନେ କଣ ମୋର ଦୁଃଖ ବୁଝିବେ ନାହିଁ । କର୍ମୀ ନ ବୁଝିଲେ ଯିବ ଗାନ୍ଧିଙ୍କ ପାଖକୁ । ଦରିଦ୍ରର ସାଥୀ ସେ, ଗରିବଙ୍କ ବନ୍ଧୁ ସେ । ସେ କଣ କହିବେ ମାଗୁଣି ମରିଯାଉ ଅଉ ଏ ସିଂହେ ବଞ୍ଚନ୍ତୁ ?

ଷ୍ଟେସନ୍‌ରୁ ଗଡ଼କୁ ସିଂହଙ୍କ ବସ୍ ଚାଲିଲା । ମାଗୁଣିର ଶଗଡ଼ ମଧ୍ୟ ଚାଲିଲା । କିନ୍ତୁ ବସ୍ ପୂର୍ଣ୍ଣ, ଶଗଡ଼ ଖାଲି । ମାଗୁଣି ଯେତେ ଥଟରୁ ରାତି ଅଧରୁ ଉଠି ଷ୍ଟେସନରେ ଶଗଡ଼ ହାଜର କଲେ ମଧ୍ୟ ଲୋକେ ଗଲେ ବସ୍‌ରେ । ଯେତେ ନୂଆ ଅଖାର ଗଦି ପକାଇଲେ ମଧ୍ୟ ଲୋକେ ଧାଇଁଲେ ବସ ମୁହଁକୁ । ଯେତେ ହାତ ଧରି ଡାକିଲେ ମଧ୍ୟ ଲୋକେ ଚାହିଁଲେ ବସ ଆଡ଼କୁ । ଦିନେ ଗଲା, ଦୁଇଦିନ ଗଲା । ସେ ଦୁଇଓଳି ଖାଇ କରି ଆସୁଥିଲା, ଓଳିଏ ଖାଇ ଆସିଲା । ସେ ଭାତ ଖାଇ ଆସୁଥିଲା, ତୋରାଣି ପିଇ ଆସିଲା । ସେ ଦୁଇ ଓଳିରେ ଥରେ ପିଇ ଆସୁଥିଲା—ଶେଷେ ତିନିଓଳି ଚୁଲି ଲାଗିଲା

Digitized by srujanika@gmail.com

ନାହିଁ । ତାଙ୍କର ଶରୀର ସ୍ଥିର ହୋଇ ପଡ଼ିଥିଲା । ସେମାନଙ୍କୁ ଧରି ସେ ଯେତେବେଳେ ଭାବନ୍ତି—କିଏ କହୁଛି ପାଗଳ, କିଏ କହୁଛି ବାୟା ।

ତା ପରେ ଯେଉଁଦିନ ମାଗୁଣୀର କୁଡ଼ିଆ ଦୁଆର ଭାଙ୍ଗି ଗାଁ ଲୋକେ ତା ଶବ କାଢ଼ିଲେ, ଦେଖିଲେ ଛିଣ୍ଡା ଚଦର ତଳେ ପାଞ୍ଚଣ ବାଡ଼ି ଖଣ୍ଡ କ ଶୁଆଇ ଦେଇ ମାଗୁଣୀ ଆଖି ବୁଜି ଦେଇଛି । ମଶାଣିରେ ନିଆଁ ଜଳିଲା, ଆକାଶରେ ପକ୍ଷୀ ଉଡ଼ି ଧୂଆଁ ପାର ହେଲେ । ପୃଥିବୀର ଦୁଇ ଲକ୍ଷ ଲୋକ ସେ ଖବର ପାଇ ଦୁଃଖରେ କହିଲେ—"ଆହା, ମାଗୁଣୀ ଚାଲିଗଲା ।"

Digitized by srujanika@gmail.com

# ଆଙ୍ଗୁଠି

ଲେଖକ—ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ

[ ପୁରୀ ଜିଲ୍ଲା ଅନ୍ତର୍ଗତ ଖୋର୍ଦ୍ଧା ନିକଟବର୍ତ୍ତୀ ଗୁରୁଜଙ୍ଗ ଗ୍ରାମରେ ୧୯୧୬ ମସିହାରେ ଲେଖକଙ୍କର ଜନ୍ମ । ଆଧୁନିକ ଓଡ଼ିଆ ସାହିତ୍ୟରେ କବିତା ଏବଂ ଗଳ୍ପ ଲେଖକ ଭାବରେ ଲେଖକଙ୍କର କୃତିତ୍ୱ ସ୍ୱୀକାର୍ଯ୍ୟ । ସେ ପଲ୍ଲୀର ସାଧାରଣ ଜୀବନକୁ କେନ୍ଦ୍ର କରି ସରସ କବିତା ରଚନା କରିଥାନ୍ତି । ପାଥେୟ, ପଲ୍ଲୀଶ୍ରୀ, ପାଣ୍ଡୁଲିପି, ଅଭିଯାନ ପ୍ରଭୃତି ତାଙ୍କର ଉତ୍କୃଷ୍ଟ କବିତା ପୁସ୍ତକ । ତାଙ୍କର 'ବାଜୀରାଉତ' କବିତା ବିଶେଷ ଆଦୃତ । ଏତଦ୍ ବ୍ୟତୀତ ସେ ପଲ୍ଲୀର ସାଧାରଣ ଜୀବନର ଘଟଣା ସମୂହକୁ କ୍ଷୁଦ୍ରଗଳ୍ପ ଆକାରରେ ପ୍ରାଣସ୍ପର୍ଶୀ ଗ୍ରାମ୍ୟଭାଷାରେ ରୂପ ପ୍ରଦାନ କରିଥାନ୍ତି । 'ମଶାଣିର ଫୁଲ,' 'ମାଟିର ତାଜ' ତାଙ୍କର ଉତ୍କୃଷ୍ଟ ଗଳ୍ପ ପୁସ୍ତକ ।

'ଅଙ୍ଗୁଠି' ଗଳ୍ପରେ ଲେଖକ ଗ୍ରାମ୍ୟ ଜୀବନର ଗୋଟିଏ ଘଟଣାକୁ ମନୋଜ୍ଞ ଶୈଳୀରେ ପ୍ରକାଶ କରିଛନ୍ତି ]

ବଡ଼ ଭୋର । ଭଣ୍ଡା-ନଟିର ସାଙ୍କଳା ପଦ ଉପରେ ଜହ୍ନ ଅଳ୍ପଅ ଶେଉଠା ଦେଖା ଯାଉଣି । ପଠାଣ ସାହିର ଗୋଟାଏ ଗୃହ କୁପଡ଼ର ବସି ଜୋମିକ୍ ମିଆଁର ଗଞ୍ଜାଟା ଚୂଳ ଝାଡ଼ି ତାଳ ଗୁଣୁଛି—ତ—ତ—ତା—ଅଁ—ଧ—ର—ର—ଶ—ଅ··· । ଓଡ଼ା ମାଟିର ସୁରୁଜ ପାଇ ଭାନଶିର ଗଛର ଅରମା ଭିତରୁ ଗୋଟାଏ ଝିଣ୍ଟିକା ଝିଁ ଝିଁ ଝିଁ ହୋଇ ତାଳ ପାଉଛି ତା ସାଥିରେ ।

Digitized by srujanika@gmail.com

ମାଗୁଣି ଶାଁ ବାହାରିଲା ହଳକୁ । କାଲି ଅସମ୍ଭବ ବର୍ଷା ହୋଇ ସ୍ଥଳ ଯାଇଛି । ନୁଖୁରା ବିଲ ମାଟିରେ ଗାର ଦେବା ପାଇଁ ଉତ୍ତମ ସୁଯୋଗ । ଗାମୁଛାଟାକୁ ଭଲକରି ମୁଣ୍ଡରେ ଗୁଡ଼େଇ ଦେଇ ସେ ବାଡ଼ପାଖ କଣିଆର ଗଛରୁ ହାତ ବଢ଼ାଇ ଖଣ୍ଡେ ଡାଳ ଭାଙ୍ଗିଲା । ତାପରେ ବିଟୁଆରୁ ଗୁଆକାଟିଟା କାଢ଼ି ସେଥିରୁ ଗଣ୍ଠି ପତ୍ରତକ ଭଲ-କରି ମାରିଦେଇ ଖଣ୍ଡେ ଦେଢ଼ହାତ ଲମ୍ବର ପାଞ୍ଚଣ ତିଆରି କଲା । ତହିଁ ଉତ୍ତାରୁ ମାମୁଲି ଅଭ୍ୟାସ ମୁତାବକ୍ ଗୋଟାଏ ଦରପାଶୋରା ହନୁଆଣୀ ଶଗଡ଼ିଆ ଗୀତରୁ ପଦେ ଗାଇ ଗାଇ ସେ ନିଜ ବିଲ-ଆଡ଼କୁ ମୁହାଁଇଲା ।

"ରାମ ଯେ ଲକ୍ଷ୍ମଣ ହୋଇ ଗଲେ ମୃଗମାରି ।"

ଶାଁ ତୋଟାର ଗଛ ଗହଳ ଭିତରେ କଣ୍ଠର ଆବାଜ୍ ତାର ପ୍ରତିଧ୍ୱନିତ ହୋଇ ମରିଗଲା ନିଜକୁଏଁ ।

କିଛିଦୂର ଯାଇ ସେ ମୁଣ୍ଡ ଉପରେ ଅମ୍ବଗଛରୁ ଖଣ୍ଡେ ଡାଳ ଭାଙ୍ଗି ଦାନ୍ତକାଠି ତିଆରି କଲା ଏବଂ ଦାନ୍ତକାଠି ଖଣ୍ଡିକ ଚୋବାଇ ଚୋବାଇ ଆଗକୁ ମାଡ଼ିଗଲା ।

ଗାଁ ମୁଣ୍ଡରେ ଗୋଟାଏ ବଡ଼ ଅନ୍ଧାର ଗଦାପରି ଡେଙ୍ଗା ଝାମ୍ପୁରା ବରଗଛଟା ଛିଡ଼ା ହୋଇଛି, ତାରି ମୂଳରେ ଗ୍ରାମଦେବତା ବାଉତୀ ଠାକୁରାଣୀଙ୍କର ଅସ୍ଥାନ ବେଦୀ । ଅଳ୍ପ ଦୂରରେ ମଶାଣି । କାଲି ରାତିର ଗୋଟାଏ ଦରପୋଡ଼ା ମୁରୁଦାରକୁ କୁକୁରେ ଧରି ଭୁଉ-ନିଅଁ ହୁକୁହୁକୁ ହୋଇ ଜଗୁଛନ୍ତି । ହନୁ ଦାଅଁ ଦେବତାଙ୍କ ଉପରେ ହଜାର ବିଶ୍ୱାସ ନ ଥିଲେ କଣ ହେବ, ସେଇ ଗଛମୂଳରେ ପହଞ୍ଚିଲାଣି ମାଗୁଣି ଟାଁର ଛାତିଟା କେଜାଣି କାହିଁକି ଭାରି ଜୋର୍‌ରେ ଦକ୍ ଦକ୍ ହୋଇ ପଡ଼ିବାକୁ ଲାଗିଲା । ବାଟରେ ଜନ-

Digitized by srujanika@gmail.com

ପ୍ରାଣୀର ସୋର ଶବଦ ନାହିଁ । ଘୂରଅନ୍ଧାର ଜମିଛି । ଅନ୍ଧକାରରେ ମାଗୁଣି ଖାଁର ହାତ ପାପୁଲିଟା ତାହାଣପଟ ବଳଦ ଲାଙ୍ଗୁଡ଼କୁ ମୁଠେଇ ଧରିଛି ।

ହଠାତ୍ ଏହିପରି ସମୟରେ ଦେଖାଗଲା, ସେଇ ବରଡ଼ଜଙ୍ଗଲ ତଳେ ଦୁଇଟା ମଣିଷର ଛାଇ । ମାଗୁଣି ଖାଁର ହୃଦରୁ ଗୋଟାଏ ଘମାଘୋଟିଆ ଝାଳ ନିଗିଡ଼ି ଗଲା । ପାଟି ତାର ଅଠାଅଠା ହୋଇ ଆସିଲା । ଠିକ୍ ଏତିକିବେଳେ ତାର ମନେ ପଡ଼ିଗଲା ଯେ ଆଜି ଶନିବାର ।

ଏ ଯାତ୍ରାରୁ ଭଲରେ ଭଲରେ ରକ୍ଷା ପାଇଲେ ଠାକୁରାଣୀକୁ ଯାଆଁଳା କୁକୁଡ଼ା ଦେବ ବୋଲି ମନାସିଲା । ହିନ୍ଦୁ ମୁସଲମାନ୍ ଉଭୟ ଧର୍ମର ଶତାଧିକ ଦଅଁ ଦେବତାଙ୍କ ନାମ ସେ ମନେ ମନେ ଉଚ୍ଚାରଣ କରିଗଲା ଏବଂ ସମସ୍ତଙ୍କୁ ନାନା ରକମର ପ୍ରଲୋଭନ ଦେଖାଇ ଏ ମହା ବିପଦରୁ ତାକୁ ରକ୍ଷା କରିବା ପାଇଁ ଅନୁରୋଧ କଲା ।

କ୍ରମେ ଛାଇ ଦୁଇଟା ଦୂରକୁ ଦୂରକୁ ଘୁଞ୍ଚିଗଲେ । ମାଗୁଣି ଖାଁର ବୋଧହୁଏ ଚେତାବୁଡ଼ି ଯାଇଥାନ୍ତା ଆଉ ଟିକିଏ ଯାଇଥିଲେ । କିନ୍ତୁ ଠିକ୍ ଏତିକିବେଳେ ସେ ସେହି ଛାଇ ଦୁଇଟାର କଥାବାର୍ତ୍ତା ଶୁଣିପାରିଲା । ଟିକିଏ ଦମ୍ଭ ଆସିଲା ତାର । ଭାବିଲା, ସତରେ ମଣିଷ ହେବେ ପରା ! । ସେ କାନ ଦୁଇଟାକୁ ଟେକି ଖୁବ୍ ତତ୍ପର ହୋଇ ଶୁଣିବାକୁ ଲାଗିଲା । ପ୍ରଥମ ଛାଇ କହୁଛି—

"ଭାଣିଅଙ୍ଗୁଠିର ଦାମ୍ କେତେ ?"

ଦ୍ୱିତୀୟ କଣ୍ଠରୁ ଉତ୍ତର ଆସିଲା—"ଆଜ୍ଞା, ଅମୂଲ ମୂଲ ହାଙ୍କୁଛି । କହୁଛି ଦେଢ଼ଶ ଟଙ୍କାରୁ ଗୋଟିଏ ପାହୁଲ ଊଣା ହେଲେ ବି ସେ ଦେବ ନାହିଁ ।"

Digitized by srujanika@gmail.com

"ରୁହା ଅଙ୍ଗୁଠି କେତେ ଓଜନରେ ହେବ ?"

"ଅଜ୍ଞା, ପାଞ୍ଚଶହ ।"

"ଠେଉ !"

"ଅଜ୍ଞା, ହଁ, ହଜୁର ମା ବାପ, ମୁଁ କଣ ମିଛ କହୁଚି ?"

"ବଡ଼ ଚଢ଼ା ଦାମ ! ଦବା ନବା କହ ।"

"ନାଇଁ ଅଜ୍ଞା, ସେ ଏକା ରେଣ୍ଟି ଧରିଛନ୍ତି—ଦେଢ଼ଶ ଟଙ୍କା ନଗଦ ନ ହେଲେ ସେ କାଣି ଅଙ୍ଗୁଠିଟି ଦବେନାହିଁ—ମୁଣ୍ଡ ଛିଡ଼ିଗଲେ ବି ନୁହେଁ ।"

ନିସ୍ତବ୍ଧତା—ଘର ଦୁଇଟା ଚୁପ୍‌ଚାପ୍ । କିଛି କ୍ଷଣ ପରେ ପ୍ରଥମ କଣ୍ଠରୁ ଉତ୍ତର ଆସିଲା—

"ଅଚ୍ଛା, ଦଅ ଯିବ । ଏଇ ଅଗତୁରା ତୋଡ଼ାଏ ଟଙ୍କା ନିଅ । ଗଣ, ଧର, ବାନ୍ଧ । ହଁ ସବୁକଥା ଯିମିତି ମନେ ରହେ । ବୁଝିଲୁ ? ହୁସିଆର ! ! !"

ମାଗୁଣି ଟଙ୍କା ଝଣ ଝଣ ଶବ୍ଦ ଶୁଣିପାରିଲା । ତା ପରେ ସେ ଦେଖିଲା, ଘର ଦୁଇଟି ବିପରୀତ ଦିଗରେ ଅନ୍ତର୍ହିତ ହୋଇଗଲେ । ମାଗୁଣି ଶାଁ ଦଣ୍ଡେ ଥକ୍କା ହୋଇ ଛିଡ଼ା ହୋଇଗଲା । ସେ ଭାବିଲା ନିଶ୍ଚୟ ଭୂତ ପ୍ରେତ ହେବେ ସବୁ । ନୋହିଲେ କାଳି ଅନ୍ଧାରରୁ ମଣିଷ ଅଙ୍ଗୁଠି କିଣା ବିକା ଲଗନ୍ତା କିଆଁ ? ବୋଧହୁଏ ମଣିଷ ଅଙ୍ଗୁଠିରେ କୁମ୍ଭୀ ତିଆରି କରି ସଇତାନ ସବୁ ଅଳି ସାଉଁଗାଉଁ କରିବେ ନା କଣ ? କିନ୍ତୁ ପରକ୍ଷଣରେ ତାର ମନେ ପଡ଼ିଲା, ସେ ପ୍ରଥମ ବ୍ୟକ୍ତିର କଣ୍ଠସ୍ୱର ଏଥି ପୂର୍ବରୁ କୁଆଡ଼ି ଯେପରି ଶୁଣିଛି । ସେ ସ୍ଥିର ହୋଇ ଠିକିଏ ହେଜିଲା । ଅନେକ ସମୟ ପରେ ତାହାର ମନେ ପଡ଼ିଲା ଯେ, ସେ କଣ୍ଠସ୍ୱର ତାଙ୍କ ଗାଁ ଜମିଦାର ବାବୁଙ୍କର ।

Digitized by srujanika@gmail.com

ଥରେ ଖଜଣା ଦେବାକୁ ଦୁଇଦିନ ଡେରି ହୋଇ ଯାଇଥିଲା ବୋଲି ଯେଉଁ କଣ୍ଟର ଆଦେଶରେ ତାକୁ ଟୋକାଏ ଅଡ଼ାର ଘରେ ବନ୍ଦ କରି ଦେଇ ଲଙ୍କାମରିଚ ଧୂଆଁ ଦିଆଯାଇଥିଲା, ସେ କଣ୍ଟ କଣ ତାକୁ ଏତେ ଜଲଦି ପ୍ରତାରିତ କରିପାରେ ? କିନ୍ତୁ ବ୍ୟାପାର କଣ ସେ କମା କିଛି ଠଉରାଇ ପାରିଲା ନାହିଁ । ତା ମୁଣ୍ଡ ଭିତରେ ସବୁ ଗୋଳମାଳ ହୋଇଗଲା । ସେଇଠୁ ଦିନ ଲେକଙ୍କଠାରୁ ସେ ଘରକୁ ବାହୁଡ଼ି ଆଇଲା । ତାର ଭୟ ସମ୍ପୂର୍ଣ୍ଣରୂପେ ଗ୍ଳାନ ନ ଥିଲା । ସେ ସଙ୍ଗେ ସଙ୍ଗେ ଘରେ ପହଞ୍ଚି ଜଣେ ଭଲ ଓଝାଙ୍କଠାରୁ ନିଜକୁ ଅଧିକତର ନିରାପଦ ରଖିବା ଉଦ୍ଦେଶ୍ୟରେ ଗୋଡ଼ଠୁ ମୁଣ୍ଡ ପର୍ଯ୍ୟନ୍ତ ଝଡ଼ାଇ ଆଣିଲା ଏବଂ ଗୋଟାଏ ଭଲ ତେଜିଁରିଆ ଆଣି ମନ୍ତ୍ର ହାତରେ ସେହି ଦିନ ଘୋଡ଼ାବାଲରେ ବାନ୍ଧି ପକାଇଲା ।

× × ×

ଆଜି ଗାଁରେ ଖୁବ୍ ବଡ଼ ସଭା । ଆଗରୁ ଢେଣ୍ଡୁରା ଦିଆଯାଇ ଥିଲା । ବକ୍ତୃତା ଦେବା ପାଇଁ କଟକରୁ କେତେଜଣ ସ୍ୱନାମଧନ୍ୟ ଦେଶକର୍ମୀ ଆସିଛନ୍ତି । ସଭାସ୍ଥଳ ଲୋକରେ ଲୋକାରଣ୍ୟ । ସଞ୍ଜ ନ ବୁଡ଼ୁଣୁ ମାଗୁଣି ବି ସଭାରେ ଆସି ଉପସ୍ଥିତ ହେଲା । ସମସ୍ତଙ୍କ ପଛରେ ସେ ଯାଇ ବସିଲା ଚୁପ୍‌ଚାପ୍ ହୋଇ । ମୁହଁରେ ତାର ଆଗ୍ରହ ଫୁଟି ଉଠୁଥିଲା ।

ଗାଁରେ ଥରକୁଥର ବନ୍ଦୋବସ୍ତ କରି ଖଜଣା ବଢ଼ାଇବା ଫଳରେ ଗାଁର ରୟତ ଓ କୃଷୀକୁଳ ଉପରେ ସର୍ବସ୍ୱାନ୍ତ ହେଉଛନ୍ତି ଏବଂ ନିରନ୍ନ ଜନସାଧାରଣଙ୍କର ଝାଳବୁହା ଖାଟୁଣିର ସୁଯୋଗ ନେଇ ଦଳେ ମୁଷ୍ଟିମେୟ ଜମିଦାର ଉପରେ ପୁଞ୍ଜି ମୁଠି ମୁଠେ କରୁଛନ୍ତି ତାର ସର୍ବଶେଷ ବର୍ଣ୍ଣନା କରି ସରକାରଙ୍କଠାରେ

Digitized by srujanika@gmail.com

ପ୍ରଜାକୁଳଙ୍କ ଅପତ୍ତି ଜଣାଇବାହିଁ ଅଜିର ଏ ସଭାର ମୁଖ୍ୟ ଉଦ୍ଦେଶ୍ୟ । ଗାଁ ଜମିଦାରଙ୍କର ଅମାନୁଷିକ ଅତ୍ୟାଚାର ଓ ଶୋଷଣ ନୀତିର ପ୍ରତିବାଦ କରିବାପାଇଁ ଏ ବିରାଟ ଜନସଭା ଅହୂତ ହୋଇଛି ।

ଘନ ଘନ କରତାଳି ମଧ୍ୟରେ ସଭାକାର୍ଯ୍ୟ ଆରମ୍ଭ ହେଲା । ଚାରିଅଡ଼େ ସ୍ୱତନ୍ତ୍ର ଉତ୍ତେଜନା । ଜନତା ଅର୍ଥରେ ଅଜ ଶ୍ରେଣୀ ଚୈତନ୍ୟର ପ୍ରଥମ ସୂଚନା ପ୍ରତିଭାତ ହେଉଛି । ଆଲୋକର ଅଜ ନୂତନ ସଙ୍କେତ ।

"ଶୁଣ ଭାଇମାନେ, ଶୁଣ ନିରନ୍ନ ନିଃଶୋଷିତ କୃଷକକୁଳ ! ଅଜ ଆମର ସର୍ବସ୍ୱ ଲେହନ କରି ପୁଞ୍ଜିବାଦର ନିଷ୍ଠୁର ଜିହ୍ୱା ଅଗ୍ରସର ହେଉଛି । ନିଜ ଦେହରେ ହାଡ଼ ଓ ମାଂସ ଛଡ଼ା ଅଉ ନିଜର ବୋଲି ଦାବୀ କରିବାର ଜିନିଷ ଆଉ ପୃଥିବୀରେ ଆମର କିଛି ନାହିଁ । ଆମର ସବୁ ଯାଇଛି, ଅଛି କେବଳ ଭଙ୍ଗା ଦଦରା ଜୀବନ । ଆହୁରି ଅଛି ଗୋଟାଏ ରୁଗ୍ଣ, ମୁମୂର୍ଷୁ ଏବଂ ଜୀର୍ଣ୍ଣ, ଦଳିତ ଅସ୍ତିତ୍ୱ । ଭାଇ ସର୍ବହରା, ଏକଜୁଟ ହୁଅ, ଏହି ଅମାନୁଷିକ ଶୋଷଣର ପ୍ରତିଶୋଧ ନିଅ ।"

ବକ୍ତୃତା ଚାଲିଲା—ଠିକ୍ ଯେପରି ଝଡ଼ର ଶିଙ୍ଗା । ଜନତାର ସମୁଦ୍ର ଉଦ୍ବେଳିତ ହୋଇଉଠିଲା । ସ୍ପନ୍ଦନ । "ଜାଗ, ଜାଗ, ନିଷ୍ପେଷିତ ଭାଇ, ତମର ସମସ୍ତ ହିତଅର ଏକତ୍ର କର, ଏକତ୍ର ହୁଅ । ମନେରଖ, ନିଜକୁ ଶୋଷିତ ହେବାକୁ ଦେବା ସବୁଠାରୁ ବଡ଼ ପାପ । ସେ ପାପର ଅଭିଶାପରେ ମଣିଷଜାତି ପଙ୍ଗୁ ହୋଇଯିବ ।"

ଜନତା ଉତ୍ତର ଦେଲା—"ଶୋଷଣବାଦ ଧ୍ୱଂସ ହେଉ, ପୁଞ୍ଜିବାଦ ଲୋପ ପାଉ ।"

Digitized by srujanika@gmail.com

ପୁଣି ବକ୍ତୃତା ଗୁଞ୍ଜିଲା—"ଉଠ ରଯ୍ୟତ ଭାଇ, ତମର ହାଡ଼ଭଙ୍ଗା ପରିଶ୍ରମ ଫଳରେ ଯେଉଁ ପଡ଼ିଆ ଭୂଇଁ ଶସ୍ୟଶ୍ୟାମଳା ଜମିରେ ପରିଣତ ହେଲା, ତାର ସ୍ୱତ୍ୱ ଆଜି ଜମିଦାର ତମଠାରୁ ହରଣ କରି ନେଉଛି । ତମେ ତମର ହକ୍ ଦାବୀ ବୁଝ । ତାକୁ ଆଦାୟ କରିବା ପାଇଁ ପ୍ରାଣପଣ କରି ଚେଇଁ ଉଠ । ଅଗ୍ରସର-ହୁଅ—ଗାଁରେ ରଯ୍ୟତସଙ୍ଘ ଗଢ଼ ।"

ଜନତାର ବିରାଟ ସାଗର ମଞ୍ଚିର ପ୍ରତିଧ୍ୱନି ଶୁଣାଗଲା— "ଜମିଦାରୀ ପ୍ରଥା ଧ୍ୱଂସ ହେଉ, ରଯ୍ୟତ ଜାତିର ଜୟ ହେଉ ।" ଠିକ୍ ଏହିପରି ସମୟରେ ସଭା ମଞ୍ଚରେ ଜଣେ ଶୀର୍ଣ୍ଣକାୟ ଲୋକ ଛିଡ଼ା ହେବାର ଦେଖାଗଲା । ସେ ସମସ୍ତଙ୍କୁ ନମସ୍କାର କରି ଜଣାଇଲା—

"ଭାଇମାନେ, ଆମ୍ଭେମାନେ ସମସ୍ତେ ମୂର୍ଖ । ଝିକିଏ ଗରମ୍ କଥାରେ ଭାସିଯିବା ଆମ ପକ୍ଷରେ ସ୍ୱାଭାବିକ । କିନ୍ତୁ ଭାଇ, ଅନ୍ୟଦ୍ୱାରା ନିଜକୁ ପ୍ରତାରିତ ହେବାକୁ ଦେବା ଉଚିତ ନୁହେଁ । ଆମ ପୂର୍ବପୁରୁଷମାନଙ୍କର ଚିରନ୍ତନ ପଥରୁ ବିଚ୍ୟୁତ ହୁଅ ନାହିଁ । 'ମହାଜନୋ ଯେନ ଗତଃ ସ ପନ୍ଥା ।' ଭାଇ, ଏ କଅଁଳକୁହାଙ୍କ କଥାରେ ନିଜର ବାଟଭୁଲି ଯାଅନାହିଁ । ଭାଇ, ରଜା ଜମିଦାର ଏମାନେ ଭଗବାନଙ୍କ ଭିଆଣ । ତାଙ୍କୁ ଦୂର କରିଦେବା ମଣିଷ ହାତର କଥା ନୁହେଁ । ତାଙ୍କୁ ସମ୍ମାନ ଦେଖାଇବାହିଁ ମନୁଷ୍ୟ ଜାତିର କର୍ତ୍ତବ୍ୟ । ଏମାନେ ଯେଉଁ 'ରଯ୍ୟତ ସଂଘ' ଗଢ଼ିବା କଥା ଭଲରେ କହିଲେ, ତାର ଭିତରି ଉଦ୍ଦେଶ୍ୟ କଣ ଜାଣ ? ତାର ଉଦ୍ଦେଶ୍ୟ ହେଉଛି ତୁମଠାରୁ ଚାନ୍ଦା ଅସୁଲ କରି ଆତ୍ମସାତ୍ କରିବା ।"

Digitized by srujanika@gmail.com

ଜନତା ଅଣିରେ ସନ୍ଦେହ ଦେଖାଗଲା । ସେମାନେ ଜଙ୍ଗୁସୁଦୃଷ୍ଟିରେ ପରସ୍ପର ଅଡ଼କୁ ଅନାଇଲେ । ଜଣେ ଦୁଇଜଣ ମଧ୍ୟ ବକ୍ତୃତାକାରୀଙ୍କ ସମର୍ଥନ ସୂଚକ ଶବ୍ଦ ପ୍ରକାଶ କରି ଉଦ୍ଗାହିତ କଲେ—ହଁ ଠିକ୍ ଠିକ୍ ।

ବକ୍ତୃତାକାରୀ ପୂର୍ବାପେକ୍ଷା ଅଧିକତର ଉଚ୍ଚ ସ୍ୱରରେ ଏଥର ଆରମ୍ଭ କଲା—"ଭାଇମାନେ, ଜମିଦାର ନ ଥିଲେ ଆଜ ଆମର ମାନ, ଇଜ୍ଜତ, ଧନ, ସମ୍ପତ୍ତି ସବୁ ଗୈରତସ୍ୱରଙ୍କ ଦ୍ୱାରା ଅବଲୁଣ୍ଠିତ ହୋଇଥାନ୍ତା । ଭାଇ, ସେ ଆମର ପ୍ରକୃତ ରକ୍ଷକ । ତାଙ୍କର ସୁଶାସନର ପ୍ରତିଦାନ ସ୍ୱରୂପ ଆମେ ଯେଉଁ ଯତ୍କିଞ୍ଚିତ ଖଜଣା ଦେଉଥାଉଁ ତାହା ଆମର ସାମାନ୍ୟ କୃତଜ୍ଞତାର ଚିହ୍ନ ସିନା । ।"

ଜନତା ଅନୁମୋଦନ ସ୍ୱରରେ କହି ଉଠିଲା—"ଠିକ୍ କଥା । ଠିକ୍ କଥା ।"

ବକ୍ତୃତାକାରୀ ଆନନ୍ଦିତ ହୋଇ ପୁଣି କହିଲେ—"ଭାଇ, ଏହି କଅଁଳକୁହା ରସୁଲସଙ୍ଘବାଲାଙ୍କୁ ବିଶ୍ୱାସ କଲେ ବିପଦରେ ପଡ଼ିବ । ମୁଁ ଏମାନଙ୍କ ସଙ୍ଗରେ ଅନେକ ଦିନ ଏକତ୍ର କାମ କରିଥିଲି, ମାତ୍ର ଏମାନଙ୍କର ସନ୍ଦୁଦ୍ଦେଶ୍ୟରେ ସନ୍ଦିହାନ ହୋଇ ମୁଁ ଅଗତ୍ୟା ସେମାନଙ୍କର ସଂସର୍ଗ ତ୍ୟାଗ କରିବାକୁ ବାଧ୍ୟ ହେଲି । ତମେ ଯଦି ଏମାନଙ୍କ କଥା ଶୁଣିବ, ତେବେ ଭଗବାନଙ୍କଠାରେ ଦ୍ରୋହୀ ହେବ । କାରଣ ଭଗବାନଙ୍କ ଅଂଶରୁ ରାଜାଙ୍କର ଜନ୍ମ । ଆମ ଗ୍ରାମଦେବତୀ ବାଉତୀ ଠାକୁରାଣୀ ମଧ୍ୟ ଆମ୍ଭମାନଙ୍କୁ ଅଭିଶାପ ଦେବେ । ଗାଁରେ ନାନା ଉତ୍ପାତ ପଡ଼ିବ । ତମମାନଙ୍କର ନିଶ୍ଚୟ ସ୍ମରଣ ଥିବ, ଏମାନେ ଠାକୁରାଣୀଙ୍କଠାରେ ଗଲାବର୍ଷ ବୋଦା ପକାଇଲାବେଳେ ନାନା ବାଧା ଘଟାଇଥିଲେ, ପିକେଟିଂ

Digitized by srujanika@gmail.com

କରିଥିଲେ । ଏମାନଙ୍କର ଭୂତପୂର୍ବ ସହକର୍ମୀ ଭାବରେ ମୁଁ ପୂର୍ବେ ଯେଉଁ ପାପ କରିଛି, ତାର ପ୍ରାୟଶ୍ଚିତ୍ତ ମୁଁ ବର୍ତ୍ତମାନ ଆପଣମାନଙ୍କ ସମ୍ମୁଖରେ କରିବି, ଅପେକ୍ଷା କରନ୍ତୁ ।"

ଆବାଳବୃଦ୍ଧବନିତା ସମସ୍ତେ ସମସ୍ୱରରେ କହି ଉଠିଲେ—

"ଠାକୁରାଣୀ ଏ ଧର୍ମଛଡ଼ାଙ୍କୁ ଖାଇଯିବ, ଖାଇଯିବ ।"

ବକ୍ତା ପୁଣି କହିଲା—"ଏମାନେ ଠାକୁରାଣୀଙ୍କ ଶତ୍ରୁ । କାଲି ମୋତେ ବାଜଣା ଠାକୁରାଣୀ ସ୍ୱପ୍ନରେ କହିଲେ, ଗାଁବାଲାଙ୍କୁ ହୁସିଆର କରିଦିଅ, ଏମାନଙ୍କୁ ଦୂର୍ ଦୂର୍ ମାର୍ ମାର୍ କରନ୍ତୁ । ନୋହିଲେ ଏ ବର୍ଷ ଘର ପୋଡ଼ି ହେବ—ଝାଡ଼ାବାନ୍ତି ହେବ । ମୋ ସାନ ଭଉଣୀ ବଅଁନ୍ତେଇ ମଧ୍ୟ ବ୍ୟାପିଯିବ । ମୋ ମଝିଆ ଭଉଣୀ ହାଡ଼ଫୁଟି ମଧ୍ୟ ଆସିବ ।"

ସମସ୍ତେ ଭୟରେ କମ୍ପି ଉଠିଲେ । ସମସ୍ତଙ୍କ ପାଟିରୁ ଶବ୍ଦ ହେଲା—"ତଡ଼, ତଡ଼, ଏମାନଙ୍କୁ ଏଠାରୁ ତଡ଼ ।"

ବକ୍ତାଜଣକ ପକେଟରୁ ଗୋଟାଏ ଲମ୍ବା ଛୁରୀ ବାହାର କଲେ । ଲଣ୍ଠନ ଆଲୁଅରେ ଛୁରୀର ତୀକ୍ଷ୍ଣଧାର ଚକ୍ ଚକ୍ ହୋଇ ଉଠିଲା । ସେ ସମସ୍ତଙ୍କୁ ଛୁରୀଟା ଦେଖାଇ କହିଲେ—

"ତମେ ମୋତେ ଅବିଶ୍ୱାସ କରିପାର, କିନ୍ତୁ ଭାଇ, ଦେଖ ମୋ କଥାର ସତ୍ୟତା ପ୍ରମାଣ କରାଇବା ପାଇଁ ମୁଁ ବର୍ତ୍ତମାନ ତମ ସାମନାରେ ମୋ ଡାହାଣି ଆଙ୍ଗୁଠିଟା ମୂଳରୁ କାଟି ଦେବି । ମୋ ରକ୍ତହିଁ ମୋ କଥାର ଏକମାତ୍ର ସାକ୍ଷୀ ।"

ସେ ଛୁରୀର ଧାରକୁ ଠିକ୍‌ଏ ପରୀକ୍ଷା କଲେ । ତା ପରେ ବାଜଣା ଠାକୁରାଣୀଙ୍କୁ ପ୍ରଣିପାତ କରି ନିଜର ଡାହାଣି ଆଙ୍ଗୁଠିଟାକୁ ଦୁଇଫାଳ କରି କାଟି ପକାଇଲେ । ଆଙ୍ଗୁଠିର ଅଗ୍ରଭାଗ ଛିଣ୍ଡିଯାଇ

Digitized by srujanika@gmail.com

ଠାକୁରାଣୀଙ୍କ ବେଦୀ ମୂଳରେ ପଡ଼ିଲା । ଭକ୍ତ ଗୁରୁଙ୍କ ଶୁଭଆଶ ନାଶ ହୋଇଗଲା । ସଙ୍ଗେ ସଙ୍ଗେ ଲଜ୍ଜିତ ହୋଇଗଲେ । ସମସ୍ତଙ୍କ ଦେହ ଶୀତେଇ ଉଠିଲା । ସ୍ତ୍ରୀ ଲୋକମାନେ ଆଖିରୁ ଲୁହ ଗଡ଼ାଇ ଦେଲେ । ପିଲାମାନେ ଭୟରେ କାନ୍ଦି ଉଠିଲେ । ସମସ୍ତେ ଭାବିଲେ—ଦେବତା ପକ୍ଷରେ ସତ । ତାର ଅସ୍ତ୍ରବଳରୁ ତାର ଅନ୍ତରର ନିର୍ମଳତା ପ୍ରମାଣ କରୁଛି ।

ସମସ୍ତଙ୍କ ରାଗ ଯାଇ ପଡ଼ିଲା ସେହି କେତେ ଜଣ କୁଖ୍ୟାତ କର୍ମୀମାନଙ୍କ ଉପରେ । ଏମାନେହିଁ ସବୁ ଅନିଷ୍ଟର ମୂଳ । କ୍ରୁଦ୍ଧ ଜନତା ସେହି ଅବସ୍ଥାରେ କର୍ମୀମାନଙ୍କୁ ଆକ୍ରମଣ କଲେ—"ଧର୍ମଦ୍ରୋହୀ, ରାଜଦ୍ରୋହୀ, ଦେଶଦ୍ରୋହୀ ଗଣ—।"

ଏହି ସମୟରେ ଦୂରରେ ଜମିଦାରଙ୍କ ସୌମ୍ୟମୂର୍ତ୍ତି ଦେଖାଗଲା । ତାଙ୍କ ମୁହଁରେ କୁଟିଳ ହାସ୍ୟ । ସେ ସମସ୍ତଙ୍କୁ ନିବୃତ୍ତ କରି କହିଲେ—

"ମୋର ପ୍ରିୟ ପ୍ରଜାବୃନ୍ଦ, କ୍ଷମା ହିଁ ମନୁଷ୍ୟର ପ୍ରଧାନ ଧର୍ମ । ଏଣୁ ମଧ୍ୟ ଆପଣ ମନୋବାକ୍ୟରେ କ୍ଷମା କରିବା ପାଇଁ ଭଗବାନ ବୁଦ୍ଧଦେବ ଓ ଯିଶୁଖ୍ରୀଷ୍ଟ ପ୍ରଭୃତି ମୁକ୍ତ କଣ୍ଠରେ ଉପଦେଶ ଦେଇ ଯାଇଛନ୍ତି । ଭାଇମାନେ, ଏମାନଙ୍କୁ ଛାଡ଼ିଦିଅ, ଏମାନେ ଅମର ଅତିଥି—ଏମାନଙ୍କୁ ପ୍ରହାର ନ କର—।"

କ୍ରୁଦ୍ଧ ଜନତା ଜମିଦାରଙ୍କର ଉଦାରତା ଓ ମହାନୁଭବତାର ପରିଚୟ ପାଇ ଅଚମ୍ଭିତ ହୋଇଗଲେ ।

ତହିଁରେ ଜମିଦାର ସାଥିନ୍ତେ ସମସ୍ତଙ୍କୁ ସମ୍ବୋଧନ କରି ଶାନ୍ତ ଓ ନମ୍ର କଣ୍ଠରେ କହିଲେ—

Digitized by srujanika@gmail.com

"ଭାଇମାନେ, ବାଇତୀ ଠାକୁରାଣୀଙ୍କ ଦୟାରୁ ଶତ ଶତ ଧନ୍ୟବାଦ । ସେ ଅମ୍ଭମାନଙ୍କ ମଧ୍ୟ ଶୁଭବୁଦ୍ଧି ପ୍ରେରଣ କରି ଅଛନ୍ତି । ଚାଲ, ଅମ୍ଭେମାନେ ସମସ୍ତେ ତାଙ୍କ ନିକଟରେ ଜାନୁପାତ ପୂର୍ବକ କୃତଜ୍ଞତା ଜଣାଇବା ।"

ସେ ଅଶ୍ରୁମାର୍ଜ୍ଜନ ଅଶ୍ରୁବିଗଳିତ ନୟନରେ ଠାକୁରାଣୀଙ୍କ ଉଦ୍ଦେଶ୍ୟରେ ନମସ୍କାର କଲେ । ଉପସ୍ଥିତ ସମସ୍ତେ ତାଙ୍କୁ ଧନ୍ୟବାଦ ଦେଇ ଦେଇ ତାଙ୍କର ଅନୁକରଣ କଲେ ।

ତାପରେ ଜମିଦାର ସାଆନ୍ତେ ସମସ୍ତଙ୍କୁ ଆଶ୍ୱାସନା ଦେଇ ଦେଇ କହିଲେ, "ଏହି ରାଜଦ୍ରୋହୀମାନଙ୍କ ଉପରେ କୌଣସି ପ୍ରକାର ଅତ୍ୟାଚାର କରିବାର ଅଧିକାର ଅମ୍ଭମାନଙ୍କର ନାହିଁ । ସେଥିପାଇଁ ଉପରେ ଭଗବାନ ଏବଂ ତଳେ ସରକାର ବାହାଦୁରଙ୍କ ନ୍ୟାୟାଧିକରଣ ରହିଛି । ମୁଁ ସେଥିପାଇଁ ସେମାନଙ୍କୁ ସସମ୍ମାନେ ପୁଲିସ ଦ୍ୱାରା ସହରରେ ଥିବା ମାଜିଷ୍ଟ୍ରେଟ ସାହେବଙ୍କ ଇଜଲାସକୁ ପ୍ରେରଣ କରିବାର ବନ୍ଦୋବସ୍ତ କରୁଛି । ବ୍ୟକ୍ତିଗତ ଭାବରେ ସେମାନେ ଆମର ଅତିଥି, ସେଥିପାଇଁ ଉଦ୍ରେକିତ ବ୍ୟବହାର ପାଇବାର ଯୋଗ୍ୟ । ହଁ, ଆଉ ଗୋଟିଏ କଥା—ମୁଁ ଏ ବର୍ଷ ଗ୍ରାମର ମଙ୍ଗଳ ପାଇଁ ଖଜଣାର ଏକ ଚତୁର୍ଥାଂଶ ବ୍ୟୟ କରି ମା ବାଇତୀଙ୍କ ଅସ୍ଥାନ ଉପରେ ଏକ ବିରାଟ ମନ୍ଦିର ତୋଳାଇବାକୁ ଆପଣମାନଙ୍କ ସମ୍ମୁଖରେ ପ୍ରତିଶ୍ରୁତ ହେଉଛି । ଆଶାକରେ, ଆପଣମାନଙ୍କର ସାହାଯ୍ୟ ଓ ସହାନୁଭୂତି ପାଇଲେ ମୋର ଏହି ଅଭିଳାଷ ଅପୂର୍ଣ୍ଣ ରହିବ ନାହିଁ ।"

ସେ ସମସ୍ତଙ୍କୁ ନମସ୍କାର କରି ନିଜର ମଟରରେ ଚଢି ବାହାରି ଗଲେ । ସଭାର ପିଲାଠାରୁ ବଡ଼ପର୍ଯ୍ୟନ୍ତ ସମସ୍ତେ ତାଙ୍କର ଉଦାରତା,

Digitized by srujanika@gmail.com

ସରଳତା ଏବଂ ଦୟାଶୀଳତା ପ୍ରଭୃତି ଦେବଦୂତଙ୍କ ସଦ୍‌ଗୁଣ-ମାନଙ୍କର ଭୂୟସୀ ପ୍ରଶଂସା କରିବାକୁ ଲାଗିଲେ । ଚାରିଆଡ଼େ ଧନ୍ୟ ଧନ୍ୟ ପଡ଼ିଲା ।

ମାଗୁଣି ଖାଁ ସଭାରେ ସମସ୍ତଙ୍କ ପଛରେ ବସି ସବୁକଥା ଦେଖୁଥିଲା । ସକାଳର କଥା ମନେ ପକାଇ ତାର ସମୁଦାୟ ଅନ୍ତରଟା ଜମିଦାରଙ୍କ ବିରୁଦ୍ଧରେ ବାତ୍ୟାଗ୍ନି ହୋଇ ଉଠିଲା । ସେ ବହୁ କଷ୍ଟରେ ଅଶ୍ରୁସମ୍ବରଣ କରି କାହାକୁ କିଛି ନକହି ସେଠାରୁ ବାହାରି ଗଲା ।

Digitized by srujanika@gmail.com